# କୁନ୍ତଳିନୀ

ଶ୍ରୀ ଦୀନବନ୍ଧୁ ପାଲ, ବି. ଏ.

ପ୍ରଣୀତ ଓ ପ୍ରକାଶିତ ।

ପ୍ରଥମ ସଂସ୍କରଣ

# KUNTALINI

*By*

**Dinabandhu Palo, B. A.,**

Printer-S. B. Rath

The ASHA Press,

BERHAMPUR.

1927

*Price Eight Annas.* ମୂଲ୍ୟ ଆଠ ଅଣା ।

# ଉତ୍ସର୍ଗ ପତ୍ର

ଯାହାଙ୍କ ପ୍ରେମପୂର୍ଣ୍ଣ ପ୍ରେରଣାରେ
ମୁଁ ଏହି ପୁସ୍ତକ ପ୍ରଣୟନରେ
ବ୍ରତୀ ହୋଇଥିଲି, ସେହି
ବଡଖିମିଡି ରାଜା,
ସାହିତ୍ୟ ରସିକ
**ଶ୍ରୀଶ୍ରୀଶ୍ରୀ କିଶୋରଚନ୍ଦ୍ର ସିଂହ ଦେବଙ୍କ**
କରକମଳରେ ଲେଖକ ହୃଦୟର
ଅକୃତ୍ରିମ କୃତଜ୍ଞତା ସ୍ୱରୂପ
ଏହି ପୁସ୍ତକ ଖଣ୍ଡି
ଉତ୍ସର୍ଗ ହେଲା ।






ଧନ୍ୟ କାଳ ତୋର କୁଟିଳ ଗତି
ସତ୍ୟେ ଶାସ୍ତି ପୁଣି ମିଥ୍ୟାକୁ ମୁକ୍ତି
କିନ୍ତୁ ଏ ବିଧାନ, ସତ୍ୟ ଅକ୍ଷୁଣ୍ଣ
ଶାସ୍ତି ଯୋଗେ ବଢ଼େ ସୁବର୍ଣ୍ଣ ସମ ।

"କିଲୋ ମା, ଆସିଲୁ ! ଆହା, ମୁଖମଣ୍ଡଳ କି ନିର୍ମଳ ! ସତେକି ଶଶାଙ୍କ ଅଙ୍ଗ ଅଙ୍କ ବିହୀନ ହୋଇ ନିଜର ଅସାଧାରଣ ରୂପରାଶି ଏହି ମୁଖଛବି ଦ୍ୱାରା ଦର୍ଶାଇ ଅଛନ୍ତି । ମା, ତତେ ଦେଖି ମୋର ହୃଦୟ ଉଲ୍ଲାସ ହେଲ" ।

ବିମାତା କୁନ୍ତଳିନୀଙ୍କ ମୁଖରୁ ଏତାଦୃଶ ବଚନାବଳୀ ନିଃସୃତ ହେବା ଅବଶ୍ୟ ଅଦ୍ଭୁତ କଥା, କିନ୍ତୁ ସତ୍ୟବତୀ ପ୍ରଶଂସାର ଉପଯୁକ୍ତ ପାତ୍ରୀ । ସପ୍ତଦଶ ବର୍ଷୀୟା କନ୍ୟା ସତ୍ୟର ସୁଗୋଲ ବଦନମଣ୍ଡଳ ସଦା ସ୍ମିତ, ଆକର୍ଣ୍ଣବ୍ୟାପୀ ଚକ୍ଷୁଦ୍ୱୟ ନୀଳମଣି ସଦୃଶ ଝଲସମାନ ଓ ବ୍ରୁ ଚକ୍ରର ବିଶିଷ୍ଟ ଭ୍ରୂଲତା ବିମଣ୍ଡିତ; କୃଷ୍ଣସାର ମୃଗ ପୁଚ୍ଛ ପରି କୁଞ୍ଚିତ କେଶଗୁଚ୍ଛ ଆପାଦଲମ୍ବିତ ଏବଂ ସୁକୁମାର ଅଙ୍ଗସଗରେ ଦଗ୍ଧକାଞ୍ଚନ ଧିକ୍କାରିତ, ସ୍ୱଚ୍ଛ ଶ୍ୱେତ ପଟ୍ଟବସ୍ତ୍ର ବିଭୂଷିତ ସେହି ସ୍ୱର୍ଗୀୟ ରୂପଲାବଣ୍ୟ ଥରେ ଦର୍ଶନ କରି ବିସ୍ମରଣ କରିବା ଦୁଃସାଧ୍ୟ ।

ଅଜି ସତ୍ୟବନ୍ତର ମୁଖାରବିନ୍ଦ କମ୍ପିତ ମଳିନ ଓ ଚକ୍ଷୁରେ ଅନିଦ୍ରତାର ଚିହ୍ନ ବିଦ୍ୟମାନ । କିନ୍ତୁ ସେହି ନୟନାଭିରାମ ଓ ମନୋମୁଗ୍ଧକର ବଦନର ପ୍ରଥମ ଦର୍ଶନରେ ପିତା 'ଦୃଢ଼କାୟ' କିମ୍ବା ବିମାତା କୁନ୍ତଳା ତାହା ନିରୀକ୍ଷଣ କରିପାରିଲେ ନାହିଁ । ସକାଳଖିଆ କୋଠାରେ ଏହି ତିନିଜଣଙ୍କ ଭେଟ । ଗମ୍ଭୀର ସୃଷ୍ଟି ବିଶାଳ, ବିମଣ୍ଡିତ ଏବଂ ନାନା ରଙ୍ଗର ଫିରଙ୍ଗି ବସ୍ତ୍ରାଚ୍ଛାଦିତ ମେଜ, ରଜତ ଓ ସ୍ଫଟିକାଦି କାରୁକାର୍ଯ୍ୟ ଖଚିତ ଚୌକି ଇତ୍ୟାଦି ପାଶ୍ଚାତ୍ୟ ଉପକରଣରେ ପରିପୂରିତ । ପ୍ରଣାମ, ଆଶୀର୍ବାଦ, ଆଲିଙ୍ଗନ ଓ ଚୁମ୍ବନାଦି ବିନିମୟ ହେଲା ପରେ ତିନିହେଁ ଯୋଗଣ ମେଜର ଚତୁର୍ଦ୍ଦିଗରେ ଚୌକି ଉପରେ ଉପବେଶନ କଲେ । ପାଠକେ ! ଯୋଗଣ ଟେବୁଲରେ ଚୌକି, ମେଜର ଅବଶ୍ୟକତା ବୁଝାଇବାକୁ କହିଲେ, ନବ୍ୟସଭ୍ୟଦଳ ଆଉ ଲେଖନୀ ଧରାଇ ଦେବେ ନାହିଁ । ପାଶ୍ଚାତ୍ୟ ସଭ୍ୟତାର ଏହା ପୁଣି ଗୋଟିଏ ଶିକ୍ଷଣୀୟ ବିଷୟ; ଏଥିଲାଗି ପରା ସାତସମୁଦ୍ର ତେରନଦୀ ନାଳ ଅତିକ୍ରମ କରି ପାଶ୍ଚାତ୍ୟ ବିଦ୍ୟା ଓ ଶିଷ୍ଟାଚାର ଶିକ୍ଷା କରିବାକୁ ହୁଏ । ଆମ୍ଭ ଦେଶରେ ଆଦିମଜାତି କନ୍ଧ, ଶବର ଭିଲ ଡ଼ମ୍ବା ଇତ୍ୟାଦିରେ ଖାଇବାର କି ଅମ୍ଭେ ଦେଖି ନାହୁଁ ? ଏହା ଛଡ଼ା ରନ୍ଧନ-ସାମଗ୍ରୀ ପ୍ରଥମେ ଇଷ୍ଟଦେବତାଙ୍କୁ ସମର୍ପଣ କରି ଗୃହ ସ୍ୱାମୀଙ୍କ ଭୋଜନ, ତାପରେ ଗୃହିଣୀଙ୍କ ଭୋଜନ ଇତ୍ୟାଦି ପୁରାତନ ହିନ୍ଦୁ ପ୍ରଣାଳୀ ଅତ୍ରକାଳରେ ଦୂଷଣୀୟ । ଏକତ୍ର ଭୋଜନ, ଏକତ୍ର ବହିର୍ଗମନ, ଏକତ୍ର ରଙ୍ଗାଳୟ ଦର୍ଶନ ଇତ୍ୟାଦି — ଆଧୁନିକମାନଙ୍କର ବ୍ୟବହାର ଓ ଶିଷ୍ଟାଚାର ହୋଇଅଛି ! ଅବଶ୍ୟ ସବୁ ରୁଚିଭେଦର କଥା । "ଭିନ୍ନ ରୁଚିର୍ହି ଲୋକା" ସେଥିଲାଗି ମନ ମଳିନ କରିବା ଅନୁଚିତ । ତିନିହେଁ ସକାଳ ଉପବେଶନ କଲାପରେ ଇଙ୍ଗିତାନୁଯାୟୀ ସୂଦକ ସେବକ ସଦାନନ୍ଦ ରନ୍ଧନଶାଳାରୁ ଥାଳି ଥାଳି କରି ନାନା ପ୍ରକାର ସୁପକ୍ୱ ଓ ସୁବାସିତ ସାମଗ୍ରୀ ଆଣି ମେଜ ଉପରେ ରଖିଦେଲା ଓ କହିଲା

ଯୋଡ଼ କିଛି ଦୂରରେ କାଷ୍ଠପୁତ୍ତଳିକା ପରି ଠିଆ ହୋଇ ରହିଲା । ତେବେ 'ହୁଣୁ ହୁଣୁ' ଶବ୍ଦର ଅର୍ଥ ? । ନବ୍ୟ ସଭ୍ୟତାନଭିଜ୍ଞ ପାଠକ-ଗଣଙ୍କର ଏହି ଶବ୍ଦ ଶୁଣି ଦୂର୍ଗା ସମ୍ଭୂର 'କରପତ୍ର' ବୋଲି ଭ୍ରମ ହୋଇ ପାରେ । ନା, ତାହା ରୌପ୍ୟ କିମ୍ବା କୃତ୍ରିମ ରୌପ୍ୟ ନିର୍ମିତ କଣ୍ଠା ଗୁମସ୍ତର ପରସ୍ପର ସଂଘର୍ଷଣ ଶବ୍ଦ ମାତ୍ର । ଏହି 'ହୁଣୁ ହୁଣୁ' ବ୍ୟାପାର କିଛି ଦୂର ଅଗ୍ରସର ହୁଅନ୍ତେ 'ବୃଦ୍ଧକାନ୍ତ' ସୁଦୀର୍ଘ ନିଶ୍ୱାସ ତ୍ୟାଗ କରି କହିଲେ, ଓହୋ ! କାଲିସନ୍ଧ୍ୟା ବାରଟା ସମୟରେ ଏହି ସହରର ଶମ୍ଭୁପୁର ଚକ [ଶ୍ରୀଷ୍ଟୀୟ ଧର୍ମାଳୟ] ଗଳିରେ ଗୋଟିଏ ଅଦ୍ଭୁତ କାଣ୍ଡ ଘଟିଅଛି । 'ଜଣେ କୌଣସି ଭଦ୍ର ସ୍ତ୍ରୀ ପ୍ରବଞ୍ଚନା କରି ସୁବିଖ୍ୟାତ ହସ୍ତମର୍ଦ୍ଦି ବୃଦ୍ଧ ଓକିଲ ହଡ଼ପ-ଲ୍ୱାଲଙ୍କୁ ମାଦକ ଦ୍ରବ୍ୟ ସେବନ କରାଇ ତାହାଙ୍କ ସୁଷୁପ୍ତାବସ୍ଥାରେ ପ୍ରାୟ ଏକ ଲକ୍ଷ ମୁଦ୍ରାର ସମ୍ପତ୍ତି ଅପହରଣ କରିଅଛି । ଏହି ବାର୍ତ୍ତା ଶ୍ରବଣ କରି ତତ୍ରସ୍ଥ ଲୋକେ ଭୀତ ଓ ବିସ୍ମିତ ଅଛନ୍ତି । ଦୋଷୀ ଜଣେ କୁଳୀନା ଥିବାର ସମ୍ବାଦ ମିଳିଅଛି । ଏହା ଶ୍ରବଣ କରିବା ମାତ୍ରେ ସତ୍ୟବତୀ ଆଶ୍ଚର୍ଯ୍ୟାନ୍ୱିତ ହୋଇ, 'ମୁଁ କାଲି' ଏତିକି ମାତ୍ର କହି ହଠାତ୍ ତୁନି ସନ୍ଦୂରଦେଶ୍ୟରେ ନିଶୀଥ ସମୟରେ ସେ ହଠାତ୍ ଘର ନିକଟକୁ ଯାଇ-ଥିଲେ, ତାହା ପ୍ରକାଶ ନକରିବା ଲାଗି ଧର୍ମକୁ ସାକ୍ଷୀ କରି ବାଗ୍‌ଦାନ କରିଥିବାର ସ୍ମରଣ ହୁଅନ୍ତେ "ରାତ୍ର ବାରଟା ସମୟରେ ସେହି ନିକଟରେ ଥିଲି" ବୋଲି ବାକ୍ୟ ପୂର୍ଣ୍ଣ କରି କହିପାରିଲେ ନାହିଁ । ଇତ୍ୟବସରରେ ତାଙ୍କ ବିମାତା କୁଟିଳ ଦୃଷ୍ଟିରେ ନିଜର ହୃଦବେଦନା ନିରୀକ୍ଷଣ କରୁ-ଥିବାର ଜାଣିପାରିଲେ । କୃତ୍ରିମ ସ୍ନେହ ସ୍ୱରରେ ଜନ୍ମ ଫଟୋପାତିତ ହଳା-ହଳଯୁକ୍ତ ବଚନରେ ବିମାତା କହିଲେ "କି ମା, ଆଜି ଟିକିଏ ମ୍ଲାନ ଥିଲ ପରି ଦିଶୁଅଛ ସତରେ ନିଦ୍ରା ହେଲା ନାହିଁକି" ? ସତ୍ୟ କଥାରୁ ବସ୍ତ ହୋଇ ଉତ୍ତର ଦେଲେ "ସତରେ ଭଲ କରି ନିଦ ହୋଇନାହିଁ ଯଥାର୍ଥ, ମାତ୍ର ସେଥିଲାଗି ମତେ କିଛି କଷ୍ଟ ଲାଗୁ ନାହିଁ ତ" । କେତେ

ଅଚ୍ଛା ! ଉକ୍ତ ହଡ଼ପଟ୍ଟଲଙ୍କ ସ୍ୱଭାବ ଖୁବ୍ ଅଦ୍ଭୁତ"। ଦୃଢ଼କାୟସ୍ଥ କିଛି ଅସୁସ୍ଥ ହୋଇ କହିଲେ, "ହଁ ଶୁଣିଅଛି ଯେ ସେ ଯେତେ ବଳ ହୋଇ ନାହାନ୍ତି, କିନ୍ତୁ ପ୍ରାଣର ଅଭାବ ନାହିଁ । ଯେ ଭାରି କଷ୍ଟ ସହି ପାରିବା ଲୋକ । ମୋ ମତରେ ଏହି ଅଦ୍ଭୁତ ଧନ ଉପାର୍ଜନ କଲାବେଳେ ସେ ଏହା ଅପେକ୍ଷା ଅଧିକ କଷ୍ଟ ଓ ମନସ୍ତାପ ସହ୍ୟ କରିଥିବେ । ଆଜିକାଲି ଓକିଲତି କାର୍ଯ୍ୟ ଯେ ଏତେ କଷ୍ଟକର, ତାହା ନୁହେ । କିନ୍ତୁ କେବଳ ଧନ ଲାଗି ଏହି ଶ୍ରେଣୀର ଲୋକଙ୍କ ବଞ୍ଚି ସମୟେ ସମୟେ ଯେଉଁ ରୀତିରେ ବ୍ୟବହାର କରନ୍ତି, ତାହା ହୃଦୟଙ୍ଗମ କରି ଲୋକଙ୍କ ବିଷୟରେ ଏହିରୂପ କହିବାକୁ ବାଧ ହେଉଛି । ଏହି ଘଟଣାଟା ତାଙ୍କ ପକ୍ଷେ କିଛି ନୁହେ । ସେ ଭଲ କରି ଜାଣିଥିବେ ଯେ ଅଦ୍ଭୁତ ଧନ ସବୁ ତାଙ୍କ କଷ୍ଟାର୍ଜିତ ନୁହେ । ଲୋକଙ୍କୁ ଧଳା ଓ ଧଳାକୁ କଳା କରି ଯେଉଁ ପରି ସେ ଲୋକଙ୍କୁ ପ୍ରତାରଣା କରିଥିଲେ ସେହିପରି ନିଜେ ପ୍ରତାରିତ ହେଲେ । ମୁଁ ବିଶ୍ୱାସ କରେ, ଅଳ୍ପଦିନ ମଧ୍ୟରେ ସେ ଯେ କୌଣସି ମତେ ନିଜର ଦୁରବସ୍ଥା ଦୂରେଇ ପକାଇବେ ।"

ଏପରି କଥାବାର୍ତ୍ତା ହେଉ ହେଉ ତ୍ୱରିତ ଭୋଜନ ଶେଷ ହେଲା ଭୁକ୍ତ ଜୀର୍ଣ୍ଣାର୍ଥେ ସତ୍ୟବ୍ରତ ଉଦ୍ୟାନରେ ପ୍ରବେଶ କଲେ । ବଗିଚାଟିର ପ୍ରାକୃତିକ ଦୃଶ୍ୟ ଅତି ମନୋହର; ସୁବାସିତ କୁସୁମ ଓ ନାନା ରଙ୍ଗର ପତ୍ରବାହରେ ପରିପୂର୍ଣ୍ଣ ଏବଂ ମଧ୍ୟ ମଧ୍ୟେ ସୁଗଠିତ ଲତାମଣ୍ଡପ ଓ ଜଳ କୁଣ୍ଡାଦି ବିଦ୍ୟମାନ । ଯୋଉଣେ ମନ୍ଦିର ଅପେକ୍ଷା ଲତା ମଣ୍ଡପ ନିକଟରେ ସତ୍ୟର ଅମାୟିକ ମୁଖଛବି ଦ୍ୱିଗୁଣ ମନୋମୁଗ୍ଧକର ଦିଶୁଥିଲା । କିନ୍ତୁ ଜଗଦୀଶ୍ୱରଙ୍କ କି ବିଚିତ୍ର ମାୟା ! ଏତାଦୃଶ ବିସ୍ମୟମାନ ମୁଖଶ୍ରୀ ସୁଦ୍ଧା ବିଷାଦ ଛାୟାରେ ଲାଞ୍ଛିତ । ଅନେକ ଲୋକେ ଓ ବନ୍ଧୁବର୍ଗ ଭାବି ଥିଲେ ଯେ, ମାତୃହୀନତା ଏହି ବିଷାଦର କାରଣ ହୋଇପାରେ । ଏତାଦୃଶ

ଅନୁମାନ ଅବଶ୍ୟ ସ୍ୱାଭାବିକ । ପାଠକେ, 'ମା', ଶବ୍ଦର କି ଅଦ୍ଭୁତ ଶକ୍ତି ! ଜୀବନର ଆରମ୍ଭରେ 'ମା' ଓ ଅନ୍ତିମ ମୁହୂର୍ତ୍ତରେ 'ମା' ଶବ୍ଦ ଛଡ଼ା ଜିହ୍ୱା ଅଧିକକିଛି ଉଚ୍ଚାରଣ କରିପାରେ ନାହିଁ । ଅପର କାଳରେ, ଦୁଃଖ କିମ୍ବା କ୍ଳାନ୍ତ ଅବସ୍ଥାରେ 'ମା'ହିଁ କେବଳ ଆଶ୍ୱାସ ବାଣୀ । ମାତୃ ବିୟୋଗରେ ଜୀବନ ଶେଷ ଯେ ମଳିନ ହୋଇଯାଏ, କେଉଁ ହୃଦୟବାନ୍ ବ୍ୟକ୍ତି ଏହା ନାସ୍ତି କରିପାରିବ ? ସତ୍ୟ ଆବାଲ୍ୟରୁ ମାତୃହୀନା । ପ୍ରଭାତ ପିତୃ ସ୍ନେହ ମଧ୍ୟ ସେହି ଅଭାବ ପୂରଣ କରିପାରି ନଥିଲା । କିନ୍ତୁ ଅଳ୍ପକାଳ ପୂର୍ବେ ପିତା କାମାନ୍ଧ ହୋଇ ଉଠେ ସୁନୟନାଙ୍କୁ ଦ୍ୱିତୀୟ ପତ୍ନୀ ରୂପେ ଗ୍ରହଣ କରିଥିଲେ ଏବଂ ତାଙ୍କର ଗୋଟିଏ ଦୁହିତା ଜାତ ହେବା ଯୋଗୁଁ ସତ୍ୟ ଏମାନଙ୍କୁ ନିଜର ମା' ଭଉଣୀ ବୋଲି ଭାବି ଆପଣାକୁ କିଛିଏ ସୁଖୀ ମଣୁଥିଲେ । କିନ୍ତୁ କର୍ମଗ୍ରହ ଯାହାକୁ ନା ବୋଲେ ସେ ନାହିଁମିଳେ ।

ବଗିଚାରେ ଫୁଲ ତୋଳୁ ତୋଳୁ ଫୁଟିଲା ଫୁଲ ଗୁଚ୍ଛାଟିଏ ଦେଖି ସତେ ଅକସ୍ମାତ୍ ତାଙ୍କ ଦୃଷ୍ଟି ଗୋଚର ହୋଇଥିଲା ଜଣେ ଅପରିଚିତ ଯୁବକର ମନୋହାରୀ ଚରିତ୍ର ସୁନ୍ଦର ବଦନ ସତ୍ୟବତୀଙ୍କ ସ୍ମରଣ ହେଲା । ସେ ତାଙ୍କ ନାମଧାମ କିଛି ଜାଣି ନଥିଲେ । କିନ୍ତୁ ସେହି ଅପରିଚିତ ଯୁବକ ସେବେଠାରୁ ତାଙ୍କ ହୃଦୟ ଦଖଲ କରିଥିଲା । ଜିଅନାଏ ପୂର୍ବେ ସତେ ସନ୍ଧ୍ୟା ସମୟରେ ସେହି ବଗିଚାର ପାଖ ରାସ୍ତା ଉପରେ ଗୋଟିଏ ମୋଟର ଗାଡ଼ି ଲେଉଟିଯାଇ, ତହିଁରୁ ସ୍ତ୍ରୀ ଓ ଶିଶୁ ବିଶେଷ ଆଘାତ ପାଇଲେ । ସତ୍ୟବତୀ ଘଟଣା ସ୍ଥଳକୁ ଯାଇ ସେମାନଙ୍କ ଶୁଶ୍ରୂଷାରେ ରତ ହେଲେ । ଇତ୍ୟବସରରେ ଜଣେ ଯୁବକ ଆସି ସେହି ସ୍ଥାନରେ ପହଞ୍ଚି ସତ୍ୟ ସହିତ ସମବେଦନୋଚିତ ସବୁ କାର୍ଯ୍ୟ ସୁଚାରୁରୂପେ ସମ୍ପାଦନ କରିଥିଲେ । କାର୍ଯ୍ୟ ଶେଷରେ କିନ୍ତୁ ସେ ଚାହିଁ ଚାହିଁ ଚାଲିଗଲେ ।

ସତ୍ୟବତୀ ଯୁବକଙ୍କୁ ଚିହ୍ନି ନଥିଲେ । ଯୁବକ ପୁଣି ସତ୍ୟଙ୍କ ଦୃଷ୍ଟିରେ ସମ୍ପୂର୍ଣ୍ଣ ଅନଭିଜ୍ଞ । କିନ୍ତୁ ସତ୍ୟ ତାହାଙ୍କୁ ପାସୋରି ନାହାନ୍ତି ଓ ଅଜ୍ଞାନ ପାସୋରିବେ ନାହିଁ । ସେ ଜଣେ ସୁନ୍ଦର, ସବଳ ଓ ସର୍ବଗୁଣସମ୍ପନ୍ନ ପୁରୁଷ । ସେହି ଯୁବକ କେବେ ସେ ଦେଖି ନାହାନ୍ତି ପୁଣି ଦେଖିବା ଅର୍ଦ୍ଧଘଣ୍ଟିକା ପରେ ଦୃଷ୍ଟିପଥରୁ ଅନ୍ତର୍ଦ୍ଧାନ ହୋଇଅଛନ୍ତି । ଯୁବକ ବାହାରି ଗଲେ, କିନ୍ତୁ ତାଙ୍କ ସୁନ୍ଦର ବଦନ, ପୌରୁଷ ଓ ସାହଚର୍ଯ୍ୟର ଦୃଢ଼ ଛବି, ସତ୍ୟର ସୁକୁମାର ନିର୍ମଳ ହୃଦୟ-ଦର୍ପଣରେ ପ୍ରତିବିମ୍ବିତ, ଯାହାରେ ପୋଷିତ ଓ ପ୍ରସ୍ଫୁଟିତ ହୋଇଥିଲା ।

ଜଣେ ଦାସୀ ବଗିଚାକୁ ଆସି କହିଲା, "ସତ୍ୟ, ପିତା ତୁମ୍ଭଙ୍କୁ ଡାକୁଛନ୍ତି । ଦୁଇଜଣ ଭଦ୍ରବ୍ୟକ୍ତି ପୁଣି, ତାଙ୍କ ସହିତ ରୁମ୍ ଅପେକ୍ଷାରେ ବସିଅଛନ୍ତି । ଶୀଘ୍ର ଦାଣ୍ଡ ଘରକୁ ଯାଅ" । ସତ୍ୟ ପ୍ରଶ୍ନ କଲେ, "ଭଦ୍ର ବ୍ୟକ୍ତି ଦୁହିଁ କିଏ ଜାଣୁଛ" ? ସେ କହିଲା, "ନା, ମୁଁ ଜାଣେ ନାହିଁ । କିନ୍ତୁ ସେମାନଙ୍କ ଆଗମନ ଓ କଥୋପକଥନ ଦ୍ୱାରା ତୁମ୍ଭ ପିତା ବହୁତ ଭୀତ ଓ ସଙ୍କୁଚିତ ହେଲାପରି ତାଙ୍କ ମୁଖଭଙ୍ଗୀରୁ ମୁଁ ଅନୁମାନ କରୁଛି" । ସତ୍ୟ ସନ୍ଦିଗ୍ଧମନା ହୋଇ କହିଲେ, "ଅଗ୍ର ଯାଅ, ପିତାଙ୍କୁ କହି ଦିଅ ମୁଁ ଏହିକ୍ଷଣି ଆସୁଅଛି" । ସତ୍ୟ ଯେଉଁ ସଜରେ ଥିଲେ, ସେହି ସଜରେ ହାତରେ ଫୁଲ ଗୁମ୍ଫାଟିଏ ଧରି ପିତାଙ୍କ ନିକଟରେ ପହଞ୍ଚିଲେ । ଦ୍ୱିଜ-କାନ୍ତ ତାଙ୍କ ନିକଟବର୍ତ୍ତୀ ହୋଇ କହିଲେ, "ସତ୍ୟ, ଏ ସମୟରେ ତତେ ଏଥି ସ୍ଥାନକୁ ଡକାଇବାରୁ ମୁଁ ବିଶେଷ ଦୁଃଖିତ, କିନ୍ତୁ ଗତଦିନ ଓଙ୍କାର ହଜାରିଲାଲଙ୍କ ଗୃହରେ ଯେଉଁ ଅଦ୍ଭୁତ କାଣ୍ଡ ଘଟିଅଛି, ତହିଁରେ ତୁ କେତେକ ପ୍ରଶ୍ନର ଉତ୍ତର ଦେବାକୁ ହେବ । କାଲି ସର୍ବଶେଷ ସମୟରେ ତୁ ଉକ୍ତ ବୃଦ୍ଧ ନିକଟକୁ ଯାଇଥିବାର ଜଣାଯାଏ, ଏହା ଯଥାର୍ଥ ?"

ସତ୍ୟ—ହଁ; ମୁଁ ସେଠାକୁ ଯାଇଥିଲି ।

କୁନ୍ତଳା—ଅଚ୍ଛା, ଆଜି ସକାଳଠାରୁ ତୁମେ ଅଚିହ୍ନା ଜାଗାରେ ଭ୍ରମଣ ସମ୍ବନ୍ଧରେ କଥୋପକଥନ କରି ସମୟରେ ମୋତେ କାହିଁକି କହିଲୁ ନାହିଁ ?

ସତ୍ୟ—[କ୍ଷୀଣ ସ୍ୱରରେ ଓ ନତମସ୍ତକ ହୋଇ] "ସେହି ସ୍ଥାନକୁ ଯିବା ବିଷୟ ପ୍ରକାଶ ନକରିବାର ଯଥେଷ୍ଟ କାରଣ ଅଛି" । ଉପସ୍ଥିତ ଭଦ୍ରବ୍ୟକ୍ତି ଦୁହେଁ ଟେପାଲସ୍ କର୍ମଚାରୀ ବୋଲି ସତ୍ୟ ସ୍ଥିର କରିପାରିଲେ । ତହିଁରୁ ଜଣେ କଞ୍ଚେଣ୍ଟ୍ ଟିପ୍ପଣୀ ପୁସ୍ତକ ବାହାର କରି କେତେ କଥା ଲେଖି-ବାକୁ ଆରମ୍ଭ କଲେ । ଅନ୍ୟଜଣକ ସତ୍ୟ ଆଡ଼କୁ ଅଗ୍ରସର ହୋଇ କହିଲେ, "ଗତ ରାତ୍ରର ବହିର୍ଗମନ କୌଣସି ଗୁପ୍ତ ସମ୍ବନ୍ଧରେ ତ ?"

ସତ୍ୟ—ଠିକ୍ ଅନୁମାନ କରିଅଛ ।

ଦୂତ—ହିଁଅ, ରାତ୍ର ଅର୍ଦ୍ଧ ସମୟରେ ଏକାକୀ ସ୍ତ୍ରୀଲୋକର ଅଗମ୍ୟ ଜଙ୍ଗଲକୁ କି ଉଦ୍ଦେଶ୍ୟରେ ତୁ ଯାଇଥିଲୁ ? ଏତେ ଦୂର କି ମୋଟର ଗାଡ଼ିରେ ଗଲୁ ?

ସତ୍ୟ—ହିଁ, ମୋର ମୋଟର ଗାଡ଼ି ମୁଁ ନିଜେ ଚଳାଇ ନେଲି ।

ଦୂତ—ଅଚ୍ଛା, ଗତ ରାତ୍ର ଯେ ଜଙ୍ଗଲରେ ତୋର କି କାର୍ଯ୍ୟ ଥିଲା, ତାହା କହିବାକୁ ତୁ ବର୍ତ୍ତମାନ ବାଧ୍ୟ । ଚିନ୍ତାକର ଯୁବତୀ ରାତ୍ର ଅର୍ଦ୍ଧ ସମୟରେ ଗୁପ୍ତ ଭାବରେ ପାଞ୍ଚ ସାତ ମାଇଲ ଦୂର ସ୍ଥାନକୁ ଯିବାରେ ଅବଶ୍ୟ କୌଣସି ଗୁରୁତର କାରଣ ଥିବ ।

ସତ୍ୟ—ଉଁ ଆଁ, ମୋଟିଏ ଗୁରୁତର କାର୍ଯ୍ୟବଶରୁ ଯାଇଥିଲି ।

ଦୂତ—ତାହା ବୁଝାଯାଉଛି କିନ୍ତୁ ବିସ୍ତୃତି ଭାବେ କହିବାକୁ ହେବ ।

ସତ୍ୟ—ବାବା ! କାରଣ ମୁଁ ପ୍ରକାଶ କରି ନପାରେ । ସେଥି-ଲାଗି ମୁଁ ବିଶେଷ ଦୁଃଖିତ ।

ଏହି ଉତ୍ତର ପ୍ରଦାନରେ ସମସ୍ତେ ନୀରବ । କର୍ମବୃଦ୍ଧ ବୃଦ୍ଧଙ୍କ ମୁଖଭଙ୍ଗୀର ପରିବର୍ତ୍ତନ ଓ ପିତାଙ୍କ ମୁଖରେ କର୍ତ୍ତବ୍ୟନିଷ୍ଠାର କରୁଣ ସ୍ୱରଶୂନ୍ୟ କାଠିଣ୍ୟ କୁଞ୍ଚିକାର ଆବିର୍ଭାବ ହେଲା ।

ବୃଦ୍ଧ ସତ୍ୟର ମୁଖକୁ ଅନାଇ କରୁଣ ଓ ଗମ୍ଭୀର ସ୍ୱରରେ କହିଲେ—"ତୁ କହିପାରୁ ନାହିଁ, ଏ କଅଣ ? କହିବାକୁ ସାହସ ଅଛି ନାହିଁ ?" ଏହି ପ୍ରଶ୍ନ ଶ୍ରବଣ କରି ସତ୍ୟ ମୌନ ରହିଲେ । ତେବେ ବୃଦ୍ଧଙ୍କ ସତ୍ୟର ହାତଧରି କହିଲେ—"ମାଁ ! ବିଷୟର ଗୁରୁତ୍ୱ ତୁ ବୁଝିପାରୁ ନାହୁଁ—ତତେ ବୁଝାଇ ଦେବା କର୍ତ୍ତବ୍ୟ; ଉକ୍ତ ପ୍ରଶ୍ନ କୌତୁକରେ ମୁଁ ପଚାରି ନାହିଁ । ହେଇଟି ଦେଖ, ଏମାନେ ପୋଲିସ କର୍ମଚାରୀ । ତୁ ଗତରାତ୍ର ଘଟଣା ସ୍ଥଳକୁ ଯାଇଥିବା ଓ ସେଠାରେ ଲୋକେ ତତେ ଦେଖିଥିବା କଥା ଏମାନଙ୍କ ମୁଖରୁ ଶୁଣି ମୁଁ ଏକାବେଳକେ ଅବାକ୍ ହୋଇଅଛି । ଭାବିଥିଲି ଯେ, ଏ ବିଷୟରେ କୌଣସି ଭୁଲ ଘଟିଅଛି—ମୋର ଦୃଢ ବିଶ୍ୱାସ ଥିଲା ଯେ, ତୁ କଦାପି ଯାଇନଥିବୁ । ସେଥିଲାଗି ତତେ ଡକାଇ ପ୍ରକୃତ କଥା ବୁଝିବା ପାଇଁ ପୋଲିସଙ୍କ ଅନୁମତି କ୍ରମେ ମୁଁ ତତେ ପଚାରି ବସିଲି । କିନ୍ତୁ ତୋହର ଉତ୍ତର ଶ୍ରବଣ କରି ମୁଁ ଆଶ୍ଚର୍ଯ୍ୟ ହୋଇଅଛି । ବର୍ତ୍ତମାନ ଉପସ୍ଥିତ ବିଷୟରେ କଅଣ କର୍ତ୍ତବ୍ୟ, ବୁଝିଲୁ ?"

ସତ୍ୟ— [ନତମସ୍ତକ ହୋଇ] ହଁ ବାପା, ବୁଝିଲି ।

ବୃଦ୍ଧ—ଅଚ୍ଛା, ମୁଁ ବିଶ୍ୱାସ କରେ, ଏବେ ସକଳ ବିଷୟ ବିଶଦ ରୂପେ ଜଣାଇ ଦେବୁ; ଏପରି ଅବସ୍ଥାରେ ତୋର ଉଦେଶ୍ୟ ଅପ୍ରକାଶ ହୋଇ ରହିବା ଅନୁଚିତ । ବର୍ତ୍ତମାନ ଆତ୍ମପରିଶୋଧ ଅତ୍ୟନ୍ତ ଆବଶ୍ୟକ ।

ସତ୍ୟ—ବାବା, ଅମୃକଥା ହୋଉଅଛନ୍ତି, ଯେଣେ ସୁଜା ସବେଦ ନଗର ସମସ୍ତ ପ୍ରକାଶ କରିଥାନ୍ତି; କିନ୍ତୁ ସେମାନେ ଅନ୍ୟ ଭବେ ଏବଂ ତାହା ପ୍ରକାଶ ନକରିବା ଲାଗି ପ୍ରମାଣ ପୂର୍ବକ ବାଗ୍‌ଦାନ କରିଅଛି ।

ବୃଦ୍ଧକାୟଙ୍କ ହୃଦୟ ଅଲୋଡ଼ିତ ହେଲା, ଡିପାଲିଯ କର୍ମଚାରୀଙ୍କ ମୁଖ ନିରୀକ୍ଷଣ କରି ଲକ୍ଷିଲେ ଯେ ସେମାନେ ସୁଜା ସମ୍ବେଦନାକାରୀ । ବିସ୍ମୟ ପକ୍ଷଙ୍କ ମନରେ ଏହି ଭାବ ଉଦୟ ହେଲା ଯେ, ଏହି ନର୍ତ୍ତକୀ ଅବଳା କୌଣସି ଚଣ୍ଡାଳୁଣୀ କୁହୁକିନୀର ମାୟାରେ ପ୍ରତାରିତ ହୋଇ ଏତାଦୃଶ ଗର୍ହିତ ମୌନାବଲମ୍ବନ ଦ୍ୱାରା ନିଜକୁ ପକ୍ଷେ ଓ ଦେଶକୁ ଗୋପନ କରୁଅଛି ।

ବୃଦ୍ଧ – ଅଚ୍ଛା, ଯାହାକୁ ତୁ ଏହି ମାଙ୍କଡ଼ୁକ ବାଗ୍‌ଦାନ କରିଅଛୁ ସେ କିଏ ?

ସତ୍ୟ—ବ୍ୟସ୍ତ ସମସ୍ତ ହୋଇ ଦୁଇହାତ ଯୋଡ଼ି ଅର୍ଦ୍ଧସ୍ଫୁଟ ସ୍ୱରରେ କହିଲେ, "ଯଦି ନାମ ପ୍ରକାଶ କରିବ, ତେବେ ମୋତେ କହିବାକୁ ହେବ; ନା, ତାହା କରି ନପାରେ, କ୍ଷମା କର ମୁଁ କଦାପି ବାଗ୍‌ଦାନ ଭ୍ରଷ୍ଟା ହୋଇ ନପାରେ ।"

ବୃଦ୍ଧକାୟ କ୍ରୋଧାଗ୍ନି ପ୍ରଜ୍ୱଳିତ ଚକ୍ଷୁ ନର୍ତ୍ତନ କରି ତାଙ୍କୁ ଅନାଇ କହିଲେ, "ଏଣିକି ବାତ୍ସଲ୍ୟ ପ୍ରଦର୍ଶନ କରିବା ଦେଖୁନାହିଁ । ନିର୍ବୋଧ ବାଳକାର କି ବାଗ୍‌ଦାନ ? ଦୋଷାଦୋଷ ବିବେଚନା ନକରି ବଚନ ଦାନ କରିବା ଦ୍ୱାରା ଅଧୀନା କନ୍ୟା କେତେ ଦୋଷୀ, ଦାହା ତାହା ମୀମାଂସା କରିବା ତୋହର କାର୍ଯ୍ୟ ନୁହେ । ତୋହ ପକ୍ଷେ ପିତାଜ୍ଞା ପାଳନ କେବଳ କର୍ତ୍ତବ୍ୟ । ଅତଏବ ମୋହର ଆଦେଶ ଏହି ଯେ, ଏହିକ୍ଷଣି ଏହି ସ୍ଥାନରେ ସମସ୍ତ ବିଷୟ ଆମୂଳ ପ୍ରକାଶ କର ।

ସାଧାରଣ ଅବସ୍ଥାରେ ଏତାଦୃଶ ବାଗ୍‌ଦାନ ପାଳନ ଆଦରଣୀୟ ହୋଇଥାନ୍ତା, କିନ୍ତୁ ବର୍ତ୍ତମାନ ଆପତ୍ତିକାଳ ଉପସ୍ଥିତ ଓ ଅବସ୍ଥା ଅସାଧାରଣ। ବିଶ୍ୱବୃତ୍ତି ଅନ୍ୟ ଯୋଗାଯୋଗ ଥିଲା ପରି ତୋ' କଥାରୁ ଜଣାଯାଏ। ଯଦି ପ୍ରକୃତରେ ସେପରି ହୋଇଥାଏ ତେବେ ଏହି ଯୋଗ୍ୟ କର୍ମଚାରୀମାନେ ତାହା ପ୍ରକାଶ କଲେ ପରି-ମୁଁ ସେମାନଙ୍କୁ ପୁରସ୍କୃତ କରିପାରିବି। ବର୍ତ୍ତମାନ ତତେ ଏହି ଯୋଗ୍ୟ କର୍ମଚାରୀଙ୍କୁ ପ୍ରମାଣ ଦେବାକୁ ହେବ ଯେ, ପୂର୍ବୋକ୍ତ ଘଟଣାରେ ତୋହର କୌଣସି ସମ୍ପର୍କ ନାହିଁ।

ସତ୍ୟ—'ମୋହର ସମ୍ପର୍କ'? [ଭୟ ବିକମ୍ପିତ ଓ କାତରକଣ୍ଠ ବଚନରେ] ବାବା—ଏହି ଜଘନ୍ୟ କାଣ୍ଡରେ ମୋହର ସମ୍ପର୍କ? ଏହି ଅଶଙ୍କା ଆପଣଙ୍କ କିମ୍ବା ଅନ୍ୟ କାହା ହୃଦୟରେ ଜାତ ହେବା ଅସମ୍ଭବ।

ଦୁର୍ଗ—ତୋହର ଏତାଦୃଶ ଗର୍ହିତ ମୂଢ଼ ଦୀନାବଲମ୍ବନ ସନ୍ଦର୍ଶନ କରି କାହା ମନରେ କି ସବୁ ଉଦୟ ହେବ କିଏ କହିପାରେ? ଅତଏବ ମୋହର ଆଜ୍ଞା ଏହି, ପ୍ରକୃତ କଥା କହିଦିଅ।

ସତ୍ୟ ସଜଳ ନୟନରେ ପିତା ଓ ଯୋଗ୍ୟ କର୍ମଚାରୀଙ୍କୁ ଅନାଇ ଅସଂଯୁକ୍ତ କିନ୍ତୁ ସୁଦୃଢ଼ ସ୍ୱରରେ ପ୍ରକାଶ କଲେ, "ମୁଁ ତାହା କରନ୍ତରେ, ଯଦି କୌଣସି ପୁରୁଷଙ୍କୁ ବାଗ୍‌ଦାନ କରିଥାନ୍ତି; ବର୍ତ୍ତମାନ ଅବସ୍ଥାରେ ସେ ତାଙ୍କ କଥା ରକ୍ଷା କରି ନପାରେ। ମାତ୍ର ଜଣେ ନିଃସହାୟ ଅବଳାକୁ ବଚନ ଦେଇ ତାହାର ସର୍ବନାଶ କରିବା ଉଚିତ ହେବ! ଏଥିପାଇଁ ଆପଣଙ୍କ ଆଜ୍ଞା ଅବଜ୍ଞା କରିବାକୁ ବାଧ୍ୟ ହେଉଅଛି। ମୋ ଜୀବନରେ କେବେ ମୁଁ ପିତାଙ୍କ ଲଙ୍ଘନ କରି ନଥିଲି"। ସତ୍ୟବତୀ ଭକ୍ତି କରି ପ୍ରାୟ ବନ୍ଦନ କଲେ ଓ ସେନିଦ୍ୟାଜଙ୍କ ବଡ଼ ଅନୁଗ୍ରହ ପ୍ରାର୍ଥୀ

ପରେ ପିତାଙ୍କ ମୁଖକୁ ଅନାଇ ରହିଲେ । କିନ୍ତୁ ସେ ଅପେକ୍ଷାକୃତ ନିଷ୍ଠ ଓ ନିର୍ଭୟ ହେବାର ଜଣାଗଲା । ସେ ପୋଲିସ କର୍ମଚାରୀଙ୍କୁ କହିଲେ, "ବର୍ତ୍ତମାନ ଯାହା କର୍ତ୍ତବ୍ୟ ତାହା କରାଗଲା, ଆପଣମାନେ ପୁନର୍ବାର ସନ୍ଧ୍ୟା ସମୟରେ ଏଠାରେ ଆସନ୍ତୁ । ଇତି ମଧ୍ୟରେ ଏହି ନିର୍ବୋଧ କନ୍ୟା ନିଜର ଦାୟିତ୍ୱ ବୁଝି ପାରିବ ବୋଲି ମୁଁ ବିଶ୍ୱାସ କରୁଅଛି ।" ଏହି ସମୟରେ ସତ୍ୟ କଅଣ ବା କହିବାକୁ ଯାନ୍ତେ—ବୃଦ୍ଧକାୟ ତାଙ୍କୁ ନିବାରଣ କରି ଘରକୁ ଫେରି ଯିବାକୁ କହିଲେ । ପୋଲିସ କର୍ମଚାରୀ ଉପରୋକ୍ତ ସମ୍ଭାଷଣକୁ ମାଝାଟିଏ ନଗ୍ନ ଟିପ୍ପଣୀ ପୁସ୍ତକରେ ସବୁ ଲେଖି ଫେରିଗଲେ ।



# ଦ୍ୱିତୀୟ ଅଧ୍ୟାୟ

ସେହିଦିନ ଅପରାହ୍ଣ ଜଳଖିଆ କଲା ପରେ ସତ୍ୟ ନିଜ ଦେଶଠାରୁ ଗାଡ଼ିରେ ବସି ଜଣେ ଗରିବ ଚୁକଗଣୀର ପୀଡ଼ିତ ଶିଶୁର ଶୁଶ୍ରୂଷା କରିବା ଲାଗି ତାହାର କୁଟିରାଭିମୁଖେ ଗମନ କଲେ । ଯାଉଁ ଯାଉଁ ମାର୍ଗ ମଧ୍ୟରେ ରାୟପୁର ଘଟଣା ଓ ନିଜର ଜବାନ-ବନ୍ଦ କଥା ସ୍ମରଣ ହେଲା । ଯାହାକୁ ଦେଖିଲେ ସେ ବିମୁଖ ଓ ଭୀତ ହୁଅନ୍ତି, ସେହି ବିଦ୍ରୂପ ନାନ୍ଦେଷ୍ଟୁ ବୃଦ୍ଧକାୟଙ୍କ ପ୍ରଧାନ କର୍ମଚାରୀ ତାହାଙ୍କ ନିକଟକୁ ଗୁପ୍ତ ଭାବରେ ଦିନେ ସନ୍ଧ୍ୟା ସମୟରେ ଯାଇ କହିଲେ, "ରାୟପୁର ନିବାସିନୀ ତୁମ୍ଭ ପ୍ରିୟତମା ମୋହିନୀ ମାତା ପିତା ତ୍ୟାଗ କରି "ଆଜିରାତି ବାରଟା ସମୟରେ ଜଣେ ଛଦ୍ମବେଶୀ-ତସ୍କର ଓ ହତ୍ୟାକାରୀ କାପୁରୁଷ ସହିତ ପଳାୟନ କରିବାକୁ ସ୍ଥିର କରଅଛି । ସେହି ପୁରୁଷଟି କେବଳ ଧନ ଲୋଭରେ ସେହି ହତ-ଭାଗିନୀକୁ ବିମୋହିତ କରିଅଛି । ବିଶ୍ୱାସ କର ନେ, ଗତ ତିନିମାସ ମଧ୍ୟରେ

ବ୍ୟକ୍ତିଙ୍କ ଗମନାନୁପଯୋଗୀ କୁଟୀରରେ ପ୍ରବେଶ କଲେ । ପୀଡ଼ିତ ଶିଶୁର ଶଯ୍ୟା ନିକଟକୁ ଯାଇ ଦେଖିଲେ ଯେ, ତାର ମା' ପାଖରେ ନାହିଁ ।

ଜଣେ ସୁସଜ୍ଜିତ, ସୁନ୍ଦର ଓ ସୂର୍ଯ୍ୟସମ ତେଜସ୍ୱୀ ଯୁବକ ଶିଶୁର ପାର୍ଶ୍ୱରେ ଉପବେଶନ କରିଅଛନ୍ତି । ତାଙ୍କୁ ଦର୍ଶନ କରି ସତ୍ୟ ଭିକ୍ଷୁ ସଙ୍କୁଚିତ ହୋଇ ଦ୍ୱାର ଦେଶରେ ଦଣ୍ଡାୟମାନ ହେଲେ । ଛ'ମାସ ପୂର୍ବେ ମୋଟର କାରର ଦୁର୍ଘଟଣା ସମୟରେ ଯାହାଙ୍କ ସହିତ ଦୈବ ଯୋଗେ କ୍ଷଣକାଳ ମିଳନ ହୋଇଥିଲା, ତତ୍କାଳାବଧି ଯେଉଁ ଉଚ୍ଚିତ କୁଳଶୀଳ ଯୁବକଙ୍କ ପ୍ରଲୋଭନୀୟ ରୂପ ଗୁଣାଦିରେ ମୋହିତ ଓ ପ୍ରୀତ ହୋଇଥିଲେ, ଏବଂ ଯାହାଙ୍କ କାଳ୍ପନିକ ସ୍ମୃତି ମୂର୍ତ୍ତିକୁ ନିଜର ଅନ୍ତଃସ୍ଥିତ ଓ ପବିତ୍ର ହୃଦୟପୀଠରେ ସାଦରେ ସ୍ଥାପନ, ଅର୍ଚ୍ଚନ ଓ ଆତ୍ମସମର୍ପଣ କରି ତତ୍ଫଳିତ ନୈସର୍ଗିକ ନବପ୍ରେମର ବିମଳ ନବନାଟକ ଅଭିନୀତ କରିବା ଲାଗି ବାଧ୍ୟ ହୋଇଥିଲେ, ବର୍ତ୍ତମାନ ସେହି ଯୁବକଙ୍କ ଅତର୍କିତ ଦର୍ଶନରେ ଚନ୍ଦ୍ରବଦନ ଉଜ୍ଜ୍ୱଳ ହେଲା ଓ ହୃତ୍ପିଣ୍ଡ ଦ୍ରୁତ ବେଗରେ ନର୍ତ୍ତନ କଲା । ଯୁବକ ଗାତ୍ରୋତ୍ଥାନ କରି କହିଲେ, "ଏହିକ୍ଷଣି ମୁଁ ଏଠାକୁ ଆସିଲି । ହାୟ, ଶିଶୁଟି ନିଦ୍ରିତ ଅଛି, ତାର ମା ବଜାରକୁ ଯିବାପାଇଁ ମତେ କିଛିକାଳ ରୋଗୀ ପାଖରେ ରହିବାକୁ ପ୍ରାର୍ଥନା କରିବାରୁ ମୁଁ ରହିଅଛି । ପିଲାଟି ବିଶେଷ ଦୁର୍ବଳ ହୋଇଗଲାଣି ଏବଂ ତନ୍ଦ୍ରା ହେଉ ଶାନ୍ତିର ଚିହ୍ନ ବୋଲି ମତେ ବୋଧ ନାହିଁ—ଯାହାହେଉ ଏବେ ନିଦ ଲାଗିଲା, ପୁନର୍ବାର ଲକ୍ଷ୍ୟ ଦୁଃସମୟରେ ଅମୃତ ଅବସ୍ଥିତି ନିକଟ !
ସତ୍ୟ ନମ୍ର ସ୍ୱରରେ କହିଲେ, "ହଁ ! ମୁଁ ଯାଉଛି-ମନେ ରଖନ୍ତୁ ଏହି ପୁଷ୍ପ ତୋଡ଼ାକ ଦେହରେ ସଜାଇ ଏହି ହେତୁରୂପ ରୋଗୀ ଶିଶୁର ନିକଟରେ ରଖି ଦେବେ; ନିଦ୍ରାଭଙ୍ଗ ହେଲେ ଏହି ସୁବାସିତ ଓ ସୁନ୍ଦର ପୁଷ୍ପରେ ତାହାର ଦୃଷ୍ଟି ପଡ଼ି ରୋଗ ଶାନ୍ତି ହୋଇପାରେ" ।

ଯୁବକ ତାଙ୍କୁ ନିବାରଣ କରି କହିଲେ, "ଏତେ କଷ୍ଟ କାହିଁକି ! ତୁମ୍ଭେ କ୍ଷଣେ ବିଶ୍ରାମ କର, ମୁଁ ଯାଇ ଏହିକ୍ଷଣି ଜଳ ନେଇ ଆସିବି"। ଯୁବକର ସେହି କଣ୍ଠନାଦ ସଦୃଶ ମୃଦୁ ମଧୁର ବଚନରେ ମୁଗ୍ଧ ହୋଇ ଯୁବତୀଙ୍କ ଅଜ୍ଞାତ ସ୍ମିତ ସୂଚନା ପୂର୍ବକ ଶ୍ରେଣୀ ନିକଟରେ ବସିଲେ; ଯୁବକ ଅଦୂରବର୍ତ୍ତୀ ନଦୀର ମଧ୍ୟରେ ଗୋଟିଏ କୁମ୍ଭରେ ଜଳ ଆଣି ରଖିଦେଲେ; ଯୁବତୀ ତହିଁରେ ଫୁଲ ସଜାଇବାକୁ ଆରମ୍ଭ କଲେ। ଯୁବକ ଅନନ୍ତର ସେମାନ ତାଙ୍କ ନିକଟରେ ବସି ଉକ୍ତ କାର୍ଯ୍ୟରେ ସାହାଯ୍ୟ କଲେ; ଏବଂ ଯୁବତୀଙ୍କ ଅଙ୍ଗୁଳି ଓ ଫୁଲ ଗୁଚ୍ଛାଟିର ସୌନ୍ଦର୍ଯ୍ୟ ସନ୍ଦର୍ଶନ କରି କହିଲେ, "ଭଦ୍ରେ ! କ୍ଷମା କରିବେ। ଏହି ଗୁଚ୍ଛଟି ଠିକ ତୁମ୍ଭପରି ହୋଇଅଛି ! ତୁମ୍ଭ ବିନା ମୋହର ପ୍ରତି ବଚନ୍ତି ହେବ ବୋଲି ଭୟ ଅଛି ଟିକିଏ କଥା କହିବାକୁ ନାହିଁ। କିନ୍ତୁ ଯେହେତୁ ଆମ୍ଭର ପରିଚିତ ହୋଇନାହିଁ; ଅତଏବ ସାହସ କରି କହୁଅଛି ଯେ ତୁମ୍ଭ ପରି ସର୍ବଗୁଣସମ୍ପନ୍ନା ରୂପବତୀ ଏହି ଅସାର ସଂସାରରେ ବିରଳ। ଅଦ୍ୟ ମୋହର ଚିରକାଳର ଆଶା ପୂରଣ ହୋଇଅଛି, ଏଣିକି ମୁଁ ତତ୍ପରେ ମୋର ବହୁଦିନରୁ ବାଞ୍ଛିତ ହେବ ନାହିଁ। ମୁଁ ତୁମ୍ଭ ନାମ ଜାଣି ନାହିଁ। ତୁମ୍ଭେ ସୁନ୍ଦର ତନ୍ତ୍ରୀ କୁନ୍ତଳାଙ୍କୁ ତଦ୍ଭବଦ୍ଧରେ ଉତ୍ସାହିତ କରିଥାଅ; ଅତଏବ ତୁମ୍ଭକୁ କୁନ୍ତଳା ବୋଲି ଡାକିବି"। ଏତତ୍-ଶ୍ରବଣରେ ଯୁବତୀର ମୁଖରେ କୃତ୍ରିମ କୋପ ପ୍ରଦର୍ଶିତ ହେବାର ଦେଖି କହିଲେ, "ଭଦ୍ରେ ! ମୁଁ ଏହି ଆଶଙ୍କା କରିଥିଲି, କ୍ଷମା କର, ମୁଁ ସେହି ଅପରାଧ କରିଅଛି ଯେ ଏହି ନାମରେ ମୁଁ ତୁମ୍ଭଙ୍କୁ ସମ୍ବୋଧନ କରିବାକୁ ଇଚ୍ଛା କରେ"। ଯୁବତୀ କିଞ୍ଚିତ୍ ମନ୍ଦହାସ କରି କହିଲେ-"ତୁମ୍ଭ ଇଚ୍ଛାରେ ଯେପରି କରିପାର, ମୁଁ କି ତାହା ନିବାରଣ କରିପାରେ ? ଯୁବକ ଦିନ୍ଦିନି ଦେଖି, ମୁଖର ବର୍ଣ୍ଣ ପରିବର୍ତ୍ତନ ହୋଇ ଆସୁଅଛି। ଦେହରେ ବକ୍ତ ହୋଇ ଦ୍ରାସ ପାଣ୍ଡୁର ବର୍ଣ୍ଣ ଘୁଞ୍ଚି ଯାଇଅଛି, ନିଶ୍ୱାସ ପ୍ରଶ୍ୱାସ

ସମଗ୍ରକରେ ଦେଖୁଅଛୁଁ । ପରମେଶ୍ୱର ଏହି ଶିଶୁକୁ ରକ୍ଷା କରିବେ ବୋଲି ମୋହର ଆଶା ହେଉଅଛି । ହେ ଜଗଦୀଶ୍ୱର ! ଏହାର ଗର୍ଭ-ଧାରିଣୀ ଲାଗି ମୁଁ ପ୍ରଣାମ କରୁଅଛି; ଶିଶୁଟିକୁ ରୋଗମୁକ୍ତ କର" । ଏତକି କହି ପୁଷ୍ପ ମୁଷ୍ଟି ଉଠାଇ ନେଇ ନିଦ୍ରା ଭଙ୍ଗ ହେଲେ ପ୍ରଥମେ ଯେଉଁ ସ୍ଥାନରେ ଦୃଷ୍ଟି ପଡ଼ିବ ସେହି ସ୍ଥାନରେ ରଖି ଦେଲେ ଓ ଯୁବକଙ୍କୁ କହିଲେ "ଦେଖ, ଏହି ଫୁଲ କିଏ ରଖିଲା କହିବ ନାହିଁ ।"

ସନ୍ତୋଷର ନିରଭିମାନତା, ଜୀବ ପ୍ରତି ଦୟା ଓ ସହାନୁଭୂତି ଏବଂ ନିଷ୍କାମ କର୍ମପଟୁତାଦି ସଦ୍ଗୁଣକୁ ମନେ ମନେ ପ୍ରଶଂସା କରି ଯୁବକ ପ୍ରକାଶ କଲେ, "କହିବାକୁ ଇଚ୍ଛା ହେଲେ ସୁଦ୍ଧା କହିବାର ଉପାୟ ନାହିଁ । ଏକଥା ତୁମେ ପାସୋରି ଅଛ ଯେ, ମୁଁ ତୁମ ବନ୍ଧୁତାର ସମ୍ପୂର୍ଣ୍ଣ ଅନଭିଜ୍ଞ । ମୋହ ପକ୍ଷରେ ତୁମେ କେବଳ କୁନ୍ତଳା ।" କୌଣସି ଅନନୁମେୟ କାରଣ ବଶତଃ, କିମ୍ବା ତାଙ୍କ ଭବିଷ୍ୟତ ଦୁର-ବସ୍ଥା ବିବେଚନାରେ ଦୈବ ବିପାକରୁ ନିଜର ପରିଚୟ ଦେବା ଲାଗି ସତ୍ୟ ଇଚ୍ଛା କଲେ ସୁଦ୍ଧା ତାହା କାର୍ଯ୍ୟରେ ପରିଣତ କରି ପାରିଲେ ନାହିଁ । ସେ ମନେ ମନେ ଭାବିଲେ ଯେ ବର୍ତ୍ତମାନ ଆତ୍ମ ପରିଚୟ ନଦେଲେ ତାଙ୍କ ଜୀବନରେ ଇଦୃଶ ସୁଯୋଗ ଘଟିବା ଅସମ୍ଭବ ହୋଇ-ପାରେ; କିନ୍ତୁ ସ୍ୱାଭାବିକ ବାଲ୍ୟ ଚପଳତା ଓ ଅବିବେକତାର ଅଧୀନ ହୋଇ ସେହି ମନୋଭାବ ଗୋପନ କରି ପ୍ରସ୍ଥାନୋନ୍ମୁଖୀ ହେଲେ, ଏବଂ ଯୁବକଙ୍କୁ ଜଣାଇ କହିଲେ, "ପ୍ରଣାମ; ମୁଁ ବିଦାୟ ନେଉଛି, ପୁନ-ର୍ବାର ଜୀବନ ଏହିରୂପ ଆକସ୍ମିକ ମିଳନ ହୋଇପାରେ ।" ସନ୍ତୋଷ ମୋଟର ଗାଡ଼ିରେ ବସି ଚଳାଇବାକୁ ଆରମ୍ଭ କରନ୍ତେ ଯେତେ ଅପରି-ଚିତ ପୁରୁଷ ନିକଟବର୍ତ୍ତୀ ହୋଇ କହିଲେ, "ତୁମେ ନିଜେ ଗାଡ଼ି ଚଳା-ଇବ ?" ସେ କହିଲେ, "ହଁ, ସାଧାରଣରେ ମୁଁ ନିଜେ ଚଳାଏଁ । ଯଦି

କୌଣସି ଉତ୍ସବକୁ କମ୍ବା ସମ୍ଭ୍ରାନ୍ତ ବନ୍ଧୁବର୍ଗଙ୍କ ନିମନ୍ତ୍ରଣ ରକ୍ଷା କରିବା ପାଇଁ ଯିବାକୁ ହୁଏ, ତେବେ ଚାଢ଼ିବାକୁ, ପର୍ଦା ଦେଇଥିବା ଅଟୋମୋବିଲ ଲୋଡ଼ା ପଡ଼େ" । "ତେବେ ତୁମ୍ଭେ ଜଣେ ବଡ଼ଘରର ଝିଅ ଚିହ୍ନାଇଥିବ" । "ହଁ ! ବଡ଼ଘର", କହି ଗାଡ଼ି ଚଳାଇ ନେଲେ । ଡାକ୍ତରଙ୍କ ଗାଡ଼ି ଦୃଷ୍ଟି ପଥରୁ ଅନ୍ତର୍ହିତ ହେବା ପରେ ଯୁବକ ଦ୍ରୁତ ପ୍ରସ୍ଥାନ କଲେ । ସତ୍ୟ ନିଜ ଗୃହରେ ପ୍ରବେଶ କରିବା ମାତ୍ରେ ପିତାଙ୍କ ଆଦେଶ କ୍ରମେ ଦାଣ୍ଡ ଘର ଟେବୁଲକୁ ଗଲେ; ସେଠାରେ ପୁନର୍ବାର ପୋଲିସ କର୍ମଚାରୀଙ୍କ ସମ୍ମୁଖରେ ନିଜ ପିତା ପ୍ରଶ୍ନ କଲେ, "ଅନ୍ନ ! ସତ୍ୟ ଏବେ ହେଲେ ପୂର୍ବୋକ୍ତ ଘଟଣା ସମ୍ବନ୍ଧରେ ଯାହା ଜାଣୁ କହିବୁ ତ" ? ସତ୍ୟବତୀ ଗମ୍ଭୀର ସ୍ୱରରେ ଉତ୍ତର କଲେ, "ଯାହା କହିବାର ଥିଲା କହିଲି, ଆଉ ଅଧିକ କହି ନପାରେ ।" ଏହି ଉତ୍ତର ଦାନରେ ପିତାଙ୍କ ମୁଖ ବିବର୍ଣ୍ଣ ହେଲା । ସେ ପୋଲିସ କର୍ମଚାରୀଙ୍କୁ ନିଜର କର୍ତ୍ତବ୍ୟ ସାଧନ କରିବା ନିମିତ୍ତ ସଙ୍କେତ ଦ୍ୱାରା ଜଣାଇ ଦେଲେ । ପୋଲିସ କର୍ମଚାରୀ କହିଲେ, "ଦେଖ, ତୁମ୍ଭ ଜମାନବନ୍ଦି ଏବଂ ଅନ୍ୟାନ୍ୟ ନିଦର୍ଶନ ଦ୍ୱାରା ତୁମ୍ଭେ ହତ୍ୟାକାଣ୍ଡରେ ଲିପ୍ତ ଥିବାର ସମ୍ପୂର୍ଣ୍ଣ ଅନୁମାନ ହେଉଅଛି । ଅତଏବ ବିଚାରପତିଙ୍କ ଅନ୍ୟାଜ୍ଞା ହେବା ପର୍ଯ୍ୟନ୍ତ ତୁମ୍ଭଙ୍କୁ ଅମ୍ଭେ ବନ୍ଦୀ କରୁଁ ।" ନିରପରାଧିନୀ ସତ୍ୟବତୀ ପୋଲିସ ଦ୍ୱାରା ଅବରୁଦ୍ଧ ହେବାର ଦେଖି ବନ୍ଧୁବର୍ଗ ବ୍ୟସ୍ତସମସ୍ତ ହୋଇ ତାହାଙ୍କୁ ଉଦ୍ଧାର କରିବାକୁ ଚେଷ୍ଟା କଲେ । କିନ୍ତୁ ପୋଲିସ ତାହା ନିବାରଣ କଲେ । କିଛିକ୍ଷଣ ପରେ ସତ୍ୟ ପୋଲିସ ଥାନାରେ ଆବଦ୍ଧା ହେଲେ ।



## ତୃତୀୟ ଅଧ୍ୟାୟ

ଅଦ୍ୟ ବିଚାର ଦିବସ । ଦୋଷୀ ଜଣେ ବିଖ୍ୟାତ ଡାକ୍ତରଙ୍କ ଝିଅ, କଚେରୀ ଘରେ ତିଳ ପଡ଼ିବାକୁ ସ୍ଥାନ ନାହିଁ । ଦୋଷୀର ବନ୍ଧୁ, ସ୍ନେହ

ଏବଂ ଦେଶଉଦ୍ଧାରରେ ବଦ୍ଧସଙ୍କଳ୍ପ ଦୃଢ଼ପ୍ରତିଜ୍ଞ । ଯନ୍ତ୍ରୀ ମନ୍ତ୍ରୀ ଓକିଲ ଓ ମୁକ୍ତିଆର—ଯିଏ ଓକାଲତି ପାଇବା ଆଶାରେ—ଯିଏ ପସ୍ପରରେ ପଡ଼ିବ ଅଧେ ସ୍ୱଦେଶ ଦେଇ ଧନିକ ବଣିକର ପ୍ରିୟପାତ୍ର ହେବା ଇଚ୍ଛା କରି କଟକର ଚିନ୍ତାରେ ଝୁହଲୁ ଅଛନ୍ତି—ଯୋଜିଏ ସେବକଙ୍କୁ ଝଣେ ତର ନାହିଁ—ସ୍ୱାମିମାନଙ୍କ ସନ୍ତୁ ଶୁଣାଇଣି ଲାଗିଛି । ସ୍ୱାହାକୁ ସେମାନଙ୍କ ପାଖ ଲଗାଇ ଦେଉ ନାହାନ୍ତି—ଲାଗିଲେତ ବନତ ଛୁଟିଯିବ, ଲଗାଇ ଦେବେ କେବେ ? ଆଜି କଟକର ଟାଉନ ସଙ୍ଗେତକ୍ଷେ ହଠ ପଡ଼ିଛି, ଉଗ୍ରସଙ୍କଳ୍ପ ଚାଷ୍ଣଦ ବଣିବା ବାହାନାରେ କେତେ ଦେଇ, ଦେଇ ଓ ପଟେଲ ଚେତନା ଦେଉଅଛନ୍ତି, କିନ୍ତୁ ଅରେ ଅଧେ ଅଙ୍କା ଗୁଣ୍ଡା ଦାଲରେ ଦଣ୍ଡେ ଦଣ୍ଡେ ଅଦୃଶ୍ୟ ହେଉଅଛନ୍ତି, ବସ୍ତ୍ରଶା କାହିଁ ଚୁକତି ହେବ ଭଲ ପାଠ ହେଲେ ମୁହା ତାଙ୍କ କାନକୁ ଶୁଭୁନାହିଁ । ଓହୋ ! ବର୍ତ୍ତ-ମାନର ଜୀବନରେ ଅଳ୍ପ କ ଭୟାନକ ଦୁର୍ଦ୍ଦିନ । ଏହିକି ରକ୍ଷା ପାଇବାର ଉପାୟ ନାହିଁ । ବସୁବଦତଙ୍କ ସମ୍ମୁଖରେ ଦଣ୍ଡାୟମାନ ହୋଇ ହୃଦ-ସ୍ଥିତ ଦୋଷ ବନ୍ଧନରେ ପ୍ରଦତ୍ତ ଅମୂଲ୍ୟ ପ୍ରମାଣଗୁଡ଼ି ଶ୍ରବଣ କରି ସେ ଅବାକ୍ ଓ ମ୍ରିୟମାଣ ହେଲେ । ଶୁଣିଲେ ଯେ, ତନ୍ତ୍ରୀ ଜଣେ ମନ୍ତ୍ରୀ ମହିଳା ତାଙ୍କ ଘରଠାରେ କୁଣିଆ ହୋଇ କେତେ ଦିନ ରହିଥିଲେ । ସେହି ସମୟରେ ତାଙ୍କର ସ୍ୱାରକଖଣ୍ଡ ବହିଦ୍ୱାର ଝୋଟିଏ କାଏ ଦେଇ କରି ନେଇ ତାହା ସ୍ଥାନରେ ତଥ୍ୟମାନ ଝୋଟିଏ କୃତ୍ରିମ ହାର ଥୋଇ ଦେଇଥିଲେ ଏବଂ ସେହି ହାର ସମ୍ବନ୍ଧ ସ୍ୱଳ୍ପ ଷଡ଼ଯନ୍ତ୍ର ପ୍ରତ୍ୟେକଙ୍କର ଶାଧ୍ୟାତଲେ ଦେଖାଇଲେ । ସତ୍ୟବତୀ ଚିତ୍କାର କରି କହିଲେ, "ହେ ପ୍ରଭୁ ! ହାୟ ! କି ମିଥ୍ୟା କଳ୍ପନା ! ମୁଁ ଏସବୁ କିଛି ଜାଣିନାହିଁ । ମୋର ଇଚ୍ଛା ଥିଲୁ ତାହା କେବେ ବାହାର ନଥିବ, କେମା ବାହାରି ହେଲେ ମୁଁ କ୍ଷଦାପି ତାହା ବଣିନାହିଁ" । କିନ୍ତୁ ବସୁବଦତଙ୍କ ତର୍କଣାରେ ସେ ମୌନ ରହିବାକୁ ବାଧ୍ୟ ହେଲେ । ମାତ୍ର ସେ ଜାଣି ପାରିଲେ ଯେ ଆଜିଠାରୁ

ଅଳଙ୍କାର ଚୋରି କରିବା ଅଭ୍ୟାସ ଥିବାର ପ୍ରମାଣିତ କରିବା ଲାଗି ପ୍ରତିପକ୍ଷ ଏହି ମିଥ୍ୟା କଳ୍ପନା କରିଥିଲେ । ତତ୍ପରେ ସାକ୍ଷୀ ପରେ ସାକ୍ଷୀ ଆସି ଦୈବ ସାକ୍ଷୀ କରି ସତ୍ୟବତୀ ପୂର୍ବୋକ୍ତ ଚୌର୍ଯ୍ୟରେ ଲିପ୍ତ ଥିବାର ପ୍ରମାଣ ଦେଲେ । ସର୍ବଶେଷରେ ବୃଦ୍ଧ ଓକିଲ ହରିପ୍ରଦ-ଲାଲଙ୍କ ସେବକ ଦୋଷୀ ଯେଉଁ ପୋଷାକ ପିନ୍ଧି ଓକିଲଙ୍କ ନିକଟକୁ ଯାଇଥିଲା, ତାହା ବର୍ଣ୍ଣନା କଲା । ତାହା ଶ୍ରବଣ କରି ଓ ତଦ୍ଦ୍ୱାରା ସେହି ରାତ୍ରି ସେ ପରିଧାନ କରିଥିବା ପୋଷାକ ବର୍ଣ୍ଣିତ ହେଉଥିବାର ହୃଦୟଙ୍ଗମ କରି ସତ୍ୟବତୀ ଭାବାବେଗ ସମ୍ବରଣ କରିନପାରି "ହେ ! ଦୈବ ! ଏତ ମାୟା, ଏତ ମାୟା" ବୋଲି କାତରସ୍ୱର ପ୍ରକାଶ କଲେ ଏବଂ "ମାୟା, ମାୟା" କହି ସେହି ଅମାୟିକା ଅବଳା ଆତ୍ମଜ୍ଞାନ ଶୂନ୍ୟ ଓ କିଂକର୍ତ୍ତବ୍ୟ-ବିମୂଢ଼ ହେଲେ । ସବୁ ଜଗତ ଅନ୍ଧାରମୟ ଏବଂ ବିଶ୍ୱର କାଣ୍ଡ ସବୁ ସ୍ୱପ୍ନବତ୍ ପ୍ରତୀତ ହେଲା । ଏହି ଅବସ୍ଥାରେ ବିଚାରପତି ପ୍ରଶ୍ନ କଲେ "ଉକ୍ତ ରାତ୍ରି ଘଟଣା ସ୍ଥାନରେ ତୁମ୍ଭେ କାହିଁକି ଉପସ୍ଥିତ ଥିଲ" ? ସତ୍ୟ ନିଜ ପିତାଙ୍କୁ ଯେଉଁ ସ୍ୱରରେ ଓ ଯେଉଁ ଶବ୍ଦରେ ଉତ୍ତର ଦେଇଥିଲେ, ବିଚାରପତିଙ୍କୁ ସୁଦ୍ଧା "ମୁଁ ତାହା ପ୍ରକାଶ କରିନପାରେ" ବୋଲି ଉତ୍ତର ଦାନ କଲେ । ସତ୍ୟବାଦୀ ସାଙ୍କୋଳିକୁ କେବେ ଶଙ୍କା କରେ ନାହିଁ । ପରିଶେଷରେ ବିଚାରପତି ସ୍ଥିର କଲେ ଯେ, ବୁଦ୍ଧି ବିବେ-ଚନାରେ ସତ୍ୟବତୀ ଓକିଲ ହରିପ୍ରଦଲାଲଙ୍କୁ ମାଦକ ଦ୍ରବ୍ୟ ସେବନ କରାଇ ତାଙ୍କ ଅଚେତନ ଅବସ୍ଥାରେ ଶତ ସହସ୍ର ମୁଦ୍ରାର ଅଳଙ୍କାର ଚୋରି କରିଅଛନ୍ତି, ଏବଂ ଉକ୍ତ ଦୋଷରେ ଦଣ୍ଡ ସ୍ୱରୂପ ସାତବର୍ଷ ପର୍ଯ୍ୟନ୍ତ କଠିଣ କାରାଦଣ୍ଡ ଭୋଗ କରିବେ । ଏହି ଭୟାନକ ଓ ଭ୍ରାନ୍ତିମୂଳକ

ନିଷ୍ପତ୍ତି ଲାଗି କିଏ ଦାୟୀ ? ଈଶ୍ୱରଙ୍କ ? ନା ସେତ ବଧିରବତ୍ ଅଟନ୍ତି ! ଆଧୁନିକ ସଭ୍ୟ ଜଗତର ଦଣ୍ଡବିଧି ଆଇନ କହୁଅଛି ପ୍ରମାଣକୁ ଗ୍ରହି ଦୋଷାଦୋଷ ବିବେଚନା କରି ତହିଁରୁ ଅଣୁମାତ୍ର ବହିର୍ଗତ ହୁଅନାହିଁ ।

ଚିନ୍ତିତ କୁତୂହଳେ ରକ୍ତ ଓ ବହୁମୂଲ୍ୟ ଅଳଙ୍କାର ବିଭୂଷିତ ମସ୍ତକ ବାହୁ ଭୂମିରେ ଲୁପ୍ତ କରି ଚିନ୍ତାମଗ୍ନ ଥିଲେ । ଏମନ୍ତ ସମୟରେ କବାଟରେ କରାଘାତ ହେଲା । ଦ୍ୱାର ନିକଟକୁ ଯାଇ କବାଟ ଫିଟାନ୍ତେ ବଦ୍ରୂପ ଭିତରେ ପ୍ରବେଶ କଲେ । ସେ କୁମ୍ଭକର୍ଣ୍ଣର ସେନାପତି, କିନ୍ତୁ ଅସ୍ତ-ପର୍ବତଙ୍କ ଯୋଦ୍ଧାଙ୍କ ବଳିଷ୍ଠ ଥିଲେ । କୁମ୍ଭକର୍ଣ୍ଣଙ୍କ ନିକଟରେ ବସି କହିଲେ "ନାଥ, ତୁ ନିଜର ଦୁର୍ବୋଧତା ନିଜେ ପ୍ରକାଶ କରୁଅଛୁ; ଏହି ସାମାନ୍ୟ ଘଟଣା ଲାଗି କାହିଁକି ଏତେ କାତର ହେଉଅଛୁ ?"

କୁମ୍ଭକର୍ଣ୍ଣ— ଭାଇ ! ଯାହା କହିଲୁ ଯଥାର୍ଥ । କିନ୍ତୁ ନରପଶୁଙ୍କ ପରାଜିତ ହୋଇବାକୁ ହେଲା, ଏ ବଡ ଲଜ୍ଜାର କଥା ।

ବଦ୍ରୂପ—ତାହା ଠିକ୍, କିନ୍ତୁ ସେ ଯାଇ ନ ହେଲେ ତୋହର ସେହି ଦଣ୍ଡ ହୋଇଥାନ୍ତା; ଯେଉଁ ଭଦ୍ର ମହିଳାର ହାରକୁ ହାରି ଅପହରଣ କରି କୁଞ୍ଜ ଉପରେ ହତୁଡ଼ିକଙ୍କୁ ଦଣ୍ଡ ଦେଇଥିଲୁ, ସେ ତାହା ଜାଣିପାରି ଦଣ୍ଡ ଦେବାକୁ ବସିଥିଲା । ଅତଏବ ତୋହର ଉଦ୍ଧାର ଲାଗି ମୁଁ ଏହି କାଣ୍ଡ କରିଥିଲି । ତୁ ତାହା ପାଇଁ ଏତେ ସନ୍ତପ୍ତ ହେଉ-ଅଛୁ କିନ୍ତୁ ମୋହର ତାହାଠାରେ ଅଣୁମାତ୍ର ଦୁଃଖ ନାହିଁ । ତାହାର ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ ପ୍ରେମ ପ୍ରାର୍ଥନା କରନ୍ତେ ସେ ମୋହ ପ୍ରତି ଦୃକ୍ପାତ ନ କରି ମତେ ଅନାଦରର ସହିତ ସମାନ କରିଥିଲା ନାହିଁ । ସେହି ଈର୍ଷାନଳ ମୋହର ହୃଦୟରେ ସଦା ଜଳି ଉଠୁଛି । ଅବସର ପାଇ ପ୍ରତିଶୋଧ ନେଇଅଛି ।

କୁମ୍ଭକର୍ଣ୍ଣ—ଅଚ୍ଛା ବଦ୍ରୂପ, ଏଣିକି ଆପଦ ନାହିଁ ତ ?

ବଦ୍ରୂପ—ଆଜିକାଲି ଆଶଙ୍କା ନାହିଁ, କିନ୍ତୁ ବନ୍ଧୁ ତୁ ଯେଉଁ ଦୋଷାକ୍ତ ଚିହ୍ନ ନେଇ ଘରକୁ ଯାଇଥିଲୁ ତାହା ଅତି ଗୁପ୍ତ ଗୌହର ଭିତରେ ଲୁଚାଇ ଦେଇଅଛି- କିଏ ଦେଖି ପାରିବ ନାହିଁ ।

କୁନ୍ତଳମା—ଯାହାହେଉ, ସତ୍ୟବତୀ ମତେ ସଦା ସୁଖପାଏ । ବିନା କାରଣରେ ଦଣ୍ଡ ଭୋଗ କଲି । ମୋହର ହୃଦୟ ବିଦାରି ହୋଇ-ଅଛି । ତାହା ବକ୍ଷ୍ୟ ସୂଚନା କଲେ ଅନ୍ତରସ୍ଥ ଜ୍ଞାନ ଉଡ଼ିଅଛି ।

ବିଦ୍ରୂପ—[କର୍କଶ ସ୍ୱରରେ] ଛି, ଛି ! ତୋହର ଏତାଦୃଶ ବାଚାଳତା ଦେଖି ମୋହର କ୍ରୋଧ ଜନ୍ମୁଅଛି । ପୁନର୍ବାର ତତେ ସତର୍କ କରାଇ ଅଛି ଯେ, ଏହିପରି ବ୍ୟବହାର କଲେ ନିଶ୍ଚେ ଅପଦସ୍ତ ହେବୁ । ମୁଁ ତୋହର ସହୋଦର, ସେ ଚଣ୍ଡାଳୁଣୀ ମତେ ଅନାଦର ଓ ଅପମାନ କରଅଛି । ସେ ଦଣ୍ଡକୁ ଯୋଗ୍ୟ—ତାହା କଥା ପାଡିବାର ଦେବାକୁ ହେବ ।

ଏତାଦୃଶ ତର୍ଜ୍ଜନ, ଗର୍ଜ୍ଜନ ଶ୍ରବଣ କରି କୁନ୍ତଳମା ଅଗତ୍ୟା ମୌନ ହେଲେ ।



## ଚତୁର୍ଥ ଅଧ୍ୟାୟ

ଅଖଣ୍ଡ ପ୍ରଚଣ୍ଡ କ୍ରୋଧିଷ୍ଟ, ରୌଦ୍ରାବ କବାଟବୁଦ୍ଧ ଏବଂ କଠୋର ନିଦ୍ରମବଦ୍ଧ ପ୍ରହରୀ ବେଷ୍ଟିତ କରାଳ କାରାଗୃହରେ ନନ୍ଦିଗ୍ରାମମାନେ କନକାଙ୍ଗୀ ବଣିକ କନ୍ୟାଙ୍କୁ ପ୍ରବେଶ କରାଇଲେ । କାରାଗୃହର ପ୍ରଥମ ନିୟମ କେଶଗୁଡ଼ିକୁ ମୁଣ୍ଡନ କରିବା । ଅହା ! ଯେଉଁ କମନୀୟ କୁଞ୍ଚିତ କୁଟିଳ କେଶ ଦର୍ଶନ କରି କାମୁକ ଯୁବକେ କମ୍ପିତ ଓ କାଳ ନାଗ-ରୂପୀ କନ୍ଦର୍ପ ଭ୍ରମରେ ଶଙ୍କିତ ଓ ମୂର୍ଚ୍ଛିତ ହେଉଥିଲେ, ଯେଉଁ ଦୈବ-ଦତ୍ତ ଆପାଦଲମ୍ବିତ କୃଷ୍ଣବର୍ଣ୍ଣ ଚିକୁର ପ୍ରାପ୍ତ ହୋଇ ସତ୍ୟବତୀ ଭଗ୍ନୀକୁ ଧନ୍ୟ ଓ ସ୍ୱର୍ଗୀୟ ଅପ୍‌ସରା ମଣୁଥିଲେ, ଏବଂ ଯେଉଁ କେଶ ସବୁ ଲଗି

ସୁବିଧାରେ ଉପଦେଶ ଅନୁଯାୟୀ ଛଦ୍ମବେଶ ଧାରଣ ପୂର୍ବକ ରହି ସେମାନେ ଥିଲେ ସେମାନେ ଦୁର୍ଗତ ହୋଇଥିବା ବେଳେ କାରାଗୃହର ପଶ୍ଚିମଦ୍ୱାରେ ପଶ୍ଚାଦ୍ଗାମୀ ସତ୍ୟଧନ ବିଦ୍ରୂପର ମୁଖ ସହସା ଦୃଷ୍ଟିଗୋଚର ହେଲା । ସେ ଜାଣିଥିଲେ ଯେ ତାହାଙ୍କ ସର୍ବନାଶକାରୀ ବିଦ୍ରୂପ ଜେଲ୍ରୁ ମୁକ୍ତି ବନ୍ଦୋବସ୍ତ କରିଲ ମୁକ୍ତ ଅଛନ୍ତି ତାହାଙ୍କୁ ବଳହାରେ ଧୃତ କରିବା ଲାଗି ସେହିଠାରେ ଲୁଚି ରହିଥିଲେ । ସଦ୍ଭାବାପନ୍ନା 'ସତ୍ୟବତୀ ସାମର୍ଥ୍ୟ ଓ ସାହସ ଧାରଣ କରି ସର୍ପ ଗତିରେ ନିକଟବର୍ତ୍ତୀ ସହରଭିମୁଖରେ ଦ୍ରୁତ ବେଗରେ ପଳାୟନ କଲେ । ମନ୍ଦ-ମତି କାମାନ୍ଧ ବିଦ୍ରୂପ ତାହାଙ୍କ ଅନୁସରଣ କରି ପାରିଲେ ନାହିଁ । ଇତମଧ୍ୟରେ ସଭା ଶେଷ ହେଲା । କାରାଗୃହ ଅଧିକାରୀମାନେ ଯେଉଁ କାର୍ଯ୍ୟରେ ପ୍ରବେଶ ହୁଅନ୍ତି ଜାଣିପାରିଲେ ଯେ ଜଣେ କଏଦି ଜେଲ ଖାନାରୁ ପଳାୟନ କରିଅଛି । ତତ୍‌କ୍ଷଣ ସେହି ସମ୍ବାଦ ସ୍ଥାନୀୟ ପୋଲିସଙ୍କୁ ଲିଖିତ ଭାବେ ଏବଂ ସ୍ଥାନାନ୍ତରକୁ ତାର ଦ୍ୱାରା ପଠାଇଲେ । ପୋଲିସ ଲୋକେ ତତ୍ପରେ ହୋଇ ସତ୍ୟବତୀଙ୍କ ଅନୁସନ୍ଧାନ କାର୍ଯ୍ୟରେ ନାନା ସ୍ଥାନରେ ପ୍ରସ୍ଥାନ କଲେ ।



## ପଞ୍ଚମ ଅଧ୍ୟାୟ

ସତ୍ୟବତୀର ପଳାୟନ ସମ୍ବାଦ ବର୍ଣ୍ଣନାର ପର ସହରଅଞ୍ଚଳ ବ୍ୟାପିଗଲା; ପୋଲିସର ବିବରଣ ପ୍ରତି ଖବର କାଗଜର ସ୍ତମ୍ଭରେ ବିଜ୍ଞାପିତ ଓ ତାହାକୁ ଧରିବା ଲାଗି ପୁରସ୍କାର ଘୋଷିତ ହେଲା । ଶୀର୍ଣ୍ଣଶରୀର ନୈରାଶ୍ୟପୀଡ଼ିତ ଦୁର୍ବଳା ହତାଶ ଅବଳା କାହିଁ ? ସେ ଭାବିଲେ ଯେ ମରଣହିଁ ଏକମାତ୍ର ଶରଣ । କିନ୍ତୁ ସ୍ୱେଚ୍ଛାଧିରେ କିଏ ମୃତ୍ୟୁ ମୁଖରେ ପତିତ ହୋଇପାରେ ? ଜିତେନ୍ଦ୍ରିୟ

ଉପସ୍ଥିତ ନଗରର ମରଣ ଅନିବାର୍ଯ୍ୟ ଜାଣି ସୁଦ୍ଧା ଶରୀର ରକ୍ଷାର ଚେଷ୍ଟା କରିଥିଲେ । ଅବଜ୍ଞାର ପାତ୍ର କେତେ ଯେ ମରଣୋନ୍ମୁଖ ହେବ ? ପୁଣି ଆତ୍ମ-ହତ୍ୟା ଅତିବ ଗର୍ହିତ ବୋଲି ସେ ଶୁଣିଥିଲେ । ଅତଏବ ଆତ୍ମଗୋପନ ଦ୍ୱାରା ପ୍ରାଣରକ୍ଷା କରିବାକୁ ସଚେଷ୍ଟ ହେଲେ । ନିକଟ-ବର୍ତ୍ତୀ ଦୋକାନକୁ ଯାଇ ପୁରୁଣା ପୋଷାକ ଦୁଇଖଣ୍ଡ କିଣି ଅବଗୁଣ୍ଠନ-ବତୀ ହୋଇ ସ୍ୱଗ୍ରାମାଭିମୁଖେ ପଳାୟନ କଲେ । ଯାଉଁ ଯାଉଁ ମାର୍ଗ ମଧ୍ୟରେ ଭାବିଲେ ଯେ ପିତାଙ୍କ ନିକଟକୁ ଯାଇ ନିଜର ନିର୍ଦ୍ଦୋଷିତା ତାହାଙ୍କୁ ଜଣାଇଲେ କେଜାଣି ତାଙ୍କ ମନ ପରିବର୍ତ୍ତନ ହୋଇ ପିତୃ ବାତ୍ସଲ୍ୟ ପୁନର୍ଜାଗ୍ରତ ହୋଇପାରେ । ପିତା ବିନା ତାଙ୍କର ଅନ୍ୟ ଆତ୍ମୀୟ କେହି ନ ଥିଲେ । ଯଦି ସେ ବୋଲି କୋଳେ ନ ପୂରନ୍ତି ତେବେ ଜୀବନ ରଖିବା କି ଫଳ ? ଏହିରୂପ ଭାବୁ ଭାବୁ ତାଙ୍କ ଗ୍ରାମର କୁଟୀରଟି ବିଦ୍ୟୁତ୍ ବେଗରେ ହୃଦପଟରେ ଚିତ୍ରିତ ହେଲା ଏବଂ ତନ୍ନି-କଟବର୍ତ୍ତୀ ସଡ଼କ ପାର୍ଶ୍ୱରେ ଜଣେ ଅପରିଚିତ ଯୁବକର ଅମୃତମୟ ଆଶାବାଣୀ ଶ୍ରବଣ କରିବାକୁ ଲାଗିଲେ । ସେ ଅଳ୍ପ ଚମକି ପଡ଼ିଲେ, ଆଉ ଜଣେ ଅଦୃଷ୍ଟ ବିଚାର ବୋଧ ହେଲା କିନ୍ତୁ ଯେଉଁ ଦିନ ଦିନା କାରଣରେ ଜୀବନ ତ୍ୟାଗ କରିବାକୁ ପଡ଼ିଲା, ସେହି ଦିନ ଅବଧି ସେ ତାଙ୍କ ଆଶା ପ୍ରାୟ ଲୁପ୍ତ ହୋଇଥିଲେ । ମାତ୍ର ମନୁଷ୍ୟର ଆଶାର ସୀମା ନାହିଁ । ଆଶାର ପ୍ରତିକୂଳତାରେ ସୁଦ୍ଧା ଅତ୍ୟାଶା ଜନ୍ମିବାର ଦେଖାଯାଏ । ପ୍ରାଣ ବିସର୍ଜନ ସ୍ପୃହା ତିରୋହିତ; ସେ କୌଣସିମତେ ଜୀବନ ରକ୍ଷାକୁ ଅତ୍ୟବଶ୍ୟ ଅଧିକତର ଚେଷ୍ଟିତ ହେଲେ !

ବାଟ ଘାଟ ଛାଡ଼ି ଜଙ୍ଗଲ କୁଳେ କୁଳେ ସ୍ୱଗ୍ରାମାଭିମୁଖେ ଗମନ କଲେ । ମାର୍ଗ ମଧ୍ୟରେ ସେହି ବୃହଦାକାର ଏକ ପ୍ରଦେଶରେ ପହଞ୍ଚି-ଲେ ଦେଖିଲେ ଯେ ଜଙ୍ଗଲ ଭିତରେ ବିଶେଷ ଜନତା ହୋଇଅଛି,

ପାରେ । ଭକ୍ତଙ୍କର ପାଦତଳେ ପଡ଼ି ବଣିକ କନ୍ୟା ବିମୁକ୍ତି ପ୍ରାର୍ଥନା କଲା । ସନ୍ଥ କହିଲେ "କନ୍ୟେ, ପୋଲାଙ୍କ ଆଦେଶ କ୍ରମେ କନ୍ଧ ପୁରୁଷର ପୁରଦ୍ୱାର ପ୍ରାନ୍ତିରେ ତୁମ୍ଭକୁ ଧରିନାହିଁ, ଅଜ ତୁମ୍ଭର ପବିତ୍ର ବଦନ ସନ୍ଦର୍ଶନ କରି ମୋର ଦେହପ୍ରାଣ ଆପ୍ୟାୟିତ ହୋଇଅଛି । ଶଙ୍କା ଦୂରକର । ମୋହ ଦୁର୍ଭେଦ୍ୟ ଅଷ୍ଟ । ମୋହର ପରଗୃହବାସରୂପ କଷ୍ଟ ଦିନ ଯାପନ କର । କେତେଦିନ ପରେ ଶେଷରେ ପରମ ପିତାଙ୍କ କୃପା ପ୍ରଭାବରେ ତୁମ୍ଭର ଏହି ଦଗ୍ଧ କପାଳ ପରିବର୍ତ୍ତନ ହୋଇପାରେ । ଏହି ଆଶ୍ୱାସ ବାଣୀ ସନ୍ନ୍ୟାସୀଙ୍କ ଶ୍ରୀମୁଖରୁ ଏହି ପଦ୍ମମୁଖୀ ବଣିକକୁମ୍ଭ ସନ୍ନ ଟେକତା ଯୋଗୀଙ୍କ ସମ୍ମୁଖରେ ଦଣ୍ଡବତ ପ୍ରଣାମ କରି ସପତ୍ନୀ ସତ୍ୟବତୀଙ୍କୁ ଦେଖିବାକୁ ପରେ ଚାଲିଲା । ତାଙ୍କ ଅନୁରୋଧ କ୍ରମେ ସତ୍ୟବତୀ ତାଙ୍କ ଅଗାର ଗୃହକୁ ପ୍ରସ୍ଥାନ କଲେ ।

ସତ୍ୟବତୀ ସପତ୍ନୀଙ୍କୁ ଦେଖିବାକୁ ମାର୍ଗ ମଧ୍ୟରେ ଯାଇ ଉପସ୍ଥିତ ଦୁର୍ଘଟନା କେତେବେଳେ ନେଇଥିବାରୁ ଉନ୍ନତ ହୃଦୟ ପାଇଲୁ ବୋଲି ହିତ, ତାହାଙ୍କୁ ଅତ୍ୟନ୍ତ ସାଦର ଓ ସସ୍ନେହେ ଗ୍ରହଣ କଲେ । ପୋଲାସ୍ କନ୍ଧ ଅନ୍ୟ କେହିଙ୍କ ଦ୍ୱାରା ଧୃତ ନ ହେବା ଲାଗି ଜଣେ ମହାଭାଗ୍ୟ ପରିବ୍ରାଜକ ବେଶଧାରଣ କରିକ ବହିର୍ଗମନ କଲେ ଅବଗୁଣ୍ଠନବତୀ ହୋଇ ସାଧ୍ୱମତେ ତାଙ୍କ ଧର୍ମ ତପସ୍ୟାରେ ଲାଗିବାକୁ ଉପଦେଶ ଦେଇ-ଥିଲେ । ଏବଂ ନାନାପ୍ରକାର ଅର୍ଥ ଓ ଅଳଙ୍କାର ଦ୍ୱାରା ସତ୍ୟବତୀର ମନ ରଞ୍ଜନ କରୁଥିଲେ । ଯେତେବେଳେ ଯାହା ମାଗିଲେ ତାହା ଦେବାରେ ଓ ସେମାନେ ଯିବାକୁ ଇଚ୍ଛା କରନ୍ତି ସେମାନେ ଜନ୍ଦରେ ବଣ୍ଟା କିଛି ମାତ୍ର ବିଳମ୍ବ ବା ବିମୁଖ ନ ହୋଇ ତାଙ୍କ ବାଞ୍ଛା ପୂରଣ କରୁଥାନ୍ତି । ଯେବେ ସତ୍ୟବତୀ ପିତୃଗୃହ ଦର୍ଶନ ଇଚ୍ଛା ପ୍ରକାଶ କରନ୍ତେ ତେବେ ତାହାଙ୍କୁ ମୋଟର ଗାଡ଼ିରେ ବସାଇ ନେଉଥିଲେ । ବଣିକ ବାର୍ତ୍ତାର

ଅନତିଦୂରରେ ଗାଡ଼ିକି ରଖି ସତ୍ୟବ୍ରତ ଏକାକୀ ବାଟିକାଟିର ଭିତରେ ପ୍ରବେଶ କଲେ; ଯାଉଁ ଯାଉଁ ସେହି ବଗିଚା କୁସୁମବନାଭ୍ୟନ୍ତର ବାଟୀର ଏକ ନିଭୃତ ପ୍ରଦେଶରେ ସ୍ତୂପ ନିର୍ମିତ ବହୁବିଧ ସ୍ତମ୍ଭ ଶ୍ରେଣୀର ତାହାଙ୍କ ଦୃଷ୍ଟି ଗୋଚର ହେଲା । ଉକ୍ତ ସ୍ତମ୍ଭ ଶ୍ରେଣୀ ନିକଟବର୍ତ୍ତୀ ହୋଇ ସୋପାନାବଳୀ ଅଙ୍କିତ ପଥ ନିର୍ମିତ ହୋଇଥିବାର ଦେଖିଲେ କୌତୂହଳାକ୍ରାନ୍ତ ହୋଇ ଭିତରେ ପ୍ରବେଶ କଲେ । କିଞ୍ଚିତ୍ ଅଗ୍ରସର ହୋଇ ଦେଖିଲେ ସ୍ୱର୍ଣ୍ଣ ରୌପ୍ୟାଦି ଆଭରଣ, ଏବଂ ବହୁ ସଂଖ୍ୟକ ରୌପ୍ୟମୁଦ୍ରା ଗଦା ଗଦା ରଖା ହୋଇଥିବାର ଲକ୍ଷ୍ୟ କରୁ କରୁ, ଗୋଟିଏ ଗର୍ଭର ନିମ୍ନ ପ୍ରଦେଶରୁ ଜଣେ ପରିଚିତ ବ୍ୟକ୍ତିଙ୍କ ସ୍ୱର ତାଙ୍କ କର୍ଣ୍ଣଗୋଚର ହେଲା । କର୍ଣ୍ଣପାତ କରି ଶ୍ରବଣ କରନ୍ତେ, ତାହା ଚନ୍ଦ୍ରପ୍ରଭାର କଣ୍ଠଧ୍ୱନି ବୋଲି ସତ୍ୟବ୍ରତ ସ୍ଥିର କଲେ ଏବଂ ଦ୍ରୁତପଦେ ଭିତରୁ ପ୍ରତ୍ୟାଗମନ କରିବାକୁ ଲାଗିଲେ । ଅତିଶୀଘ୍ର ଉପରକୁ ଉଠି ଚିହ୍ନିତ ଦର୍ଶନୀ ଦ୍ୱାର ପରିତ୍ୟାଗ କରି ପୁନର୍ବାର ମୋଟରରେ ବସି ନଗରକୁ ଫେରିଗଲେ । ଯାଉଁ ଯାଉଁ ମାର୍ଗମଧ୍ୟରେ ସେହି ଅଞ୍ଚଳର ପୋଲିସ ଥାନାଘରେ ଝଟାଖଟ ପ୍ରବେଶ କଲେ । ଦାରୋଗାବାବୁଙ୍କୁ ଜଣେଇ ପ୍ରେମଜାତି । କିଛିକ୍ଷଣ ମଧ୍ୟରେ ଏହି ଅପରିଚିତ ସ୍ତ୍ରୀ ଦ୍ୱୟଙ୍କ ସମ୍ବନ୍ଧ ସ୍ନେହ କରି କଥା ପ୍ରସଙ୍ଗରେ ଦୂତକାନ୍ତଙ୍କ ଗୃହଠାରେ କେତେକ ଷଡ଼ଯନ୍ତ୍ର କାଣ୍ଡ ଚଳୁଥିବାର ସୂଚନା କଲେ ! ସେ ବିଷୟରେ ନିଶ୍ଚିତ ଜଣେଇ ଦେବାଲାଗି ବିଶେଷ ଅନୁରୋଧ କରନ୍ତେ "କାଲିକିମେ ତାହା ପ୍ରକାଶିତ-ହେବ" ବୋଲି ତାଙ୍କଠାରୁ ଅଧିକାରୀ ଜଣାଇଲେ । ତେବେ ସେଙ୍କ ଏକଥା ମନେ ରଖି ସତ୍ୟ ସହିତ ସ୍ୱସ୍ଥାନକୁ ପ୍ରସ୍ଥାନ କଲେ ।



ବିଶାଖା—କେତେବର୍ଷ ପୂର୍ବେ ମୁଁ ତୁମ୍ଭଘରଠାକୁ ଯିବାବେଳେ ତୁମ୍ଭପର ମୋହର ଟୋକିଏ ଦୁହିତା ଥିବା କଥା କହିଥିଲି, ସ୍ମରଣ ଅଛିତ ?

ସତ୍ୟବ୍ରତ—ହିଁ ମନେ ଅଛି ।

ବିଶାଖା—ତୁମ୍ଭେ ଶୁଣିଥିବ ସେ ଜଣେ କୋଟୀଶ୍ୱର, ମୋହ ସ୍ୱାମୀଙ୍କ ଜ୍ୟେଷ୍ଠଭ୍ରାତା ତାହା ନାମରେ ତିନିକୋଟି ମୁଦ୍ରା ସମ୍ପତ୍ତି ଗଚ୍ଛିତ ରଖିଅଛନ୍ତି । କିନ୍ତୁ ସେ ଏହି ନିୟମ କରି ଅଛନ୍ତି ଯେ ମୋହ କନ୍ୟା ଅମଳା ଦୟାନିଧି ସିଂହଙ୍କ ପାଣିଗ୍ରହଣ ନ କଲେ ଉକ୍ତ ସମ୍ପତ୍ତିର ଉତ୍ତରାଧିକାରିଣୀ ହୋଇପାରିବ ନାହିଁ । ତୁମ୍ଭେ ଦୟାନିଧି ସିଂହଙ୍କୁ ଜାଣିକି ?

ସତ୍ୟ—ହଁ, ମୁଁ ଶୁଣିଅଛି ସେ ଜଣେ ଧନାଢ୍ୟ ଏବଂ ମାନ୍ଦ୍ରାଜ ରାଜଧାନୀର ଉତ୍ତର ସୀମାସ୍ଥ ବନ୍ଧୁ ସକଳର ପ୍ରତିଷ୍ଠିତ ଜମିଦାର ବନାକୀର୍ଣ୍ଣ ବଡ଼ଗଡ଼ ନାମଧେୟ ପୁରାତନ ରାଜଧାନୀର ଯଶସ୍ୱୀ ସିଂହ ବଂଶଜ ଅଟନ୍ତି । କୌଣସି ଅଜ୍ଞାତ କାରଣରୁ ସ୍ୱଦେଶ ତ୍ୟାଗ କରି ଭାରତର ନାନା ତୀର୍ଥକ୍ଷେତ୍ର ପରିଦର୍ଶନ ପୂର୍ବକ ପରିଶେଷରେ ଏହି ମାନ୍ଦ୍ରାଜ ନଗରର ଅନତିଦୂରରେ ଅଭିଳାଷପୁରଠାରେ ଶିବିର ସ୍ଥାପନ କରି ନିବାସ କରୁଥିଲେ । ମୁଁ ବିପଦ୍‌ଗ୍ରସ୍ତ ହେବା ପୂର୍ବେ ଶୁଣିଥିଲି ଯେ ଉକ୍ତ ମହାରାଜା ଅର୍ଥାଭାବ ହେତୁ ନିଜର ବଡ଼ିମା ରକ୍ଷା କରି ପାରୁ ନଥିଲେ, କିନ୍ତୁ ଧନହୀନ ହେଲେ ସୁଦ୍ଧା ସେ ମାନହୀନ ନ ହେବାକୁ ପ୍ରାଣପଣେ ଚେଷ୍ଟା କରୁଥିଲେ । ମାନାପମାନ ତାଙ୍କର ଜୀବନ ସର୍ବସ୍ୱ ଥିଲା ।

ବିଶାଖା—ହଁ ତୁମ୍ଭେ ଠିକ୍ ବୁଝିଅଛ । ଦୟାନିଧି ସିଂହ ପ୍ରକୃତରେ ଧନହୀନ; ସେ ଆଜିକାଲି ମୋହ କନ୍ୟାର ପାଣିଗ୍ରହଣ କରି ଲୋଭା-

ତୁମ୍ଭର କଷ୍ଟ ହାତ ହେବନାହିଁ । କାରଣ ପୋଲିସ ଲୋକେ ତୁମ୍ଭଙ୍କୁ ଧରିବା ବଦଳରୁ ନିଷ୍କୃତି ପାଇପାରିବ । ବିଶ୍ୱାସ କରଯେ, ଏହି ନବାବ ଉଦ୍ଧବ ଗୃହରେ ମୋହର କନ୍ୟା ରୂପେ ପରିଚୟ ଦେଉଥିବା ବେଳେ କାରାଗୃହରୁ ପଳାୟିତା ସତ୍ୟବତୀ ବୋଲି ତୁମ୍ଭଠାରେ କେହି ସନ୍ଦେହ କରି ପାରିବେ ନାହିଁ ।

ସତ୍ୟ—ଦୀର୍ଘ ନିଃଶ୍ୱାସ ପରିତ୍ୟାଗ ପୂର୍ବକ କହିଲେ "ଯାହା-ହେଉ, ମିଥ୍ୟାକଥା କହିବାକୁ ହେବ । ପୁଣି ବୁଝି ପୂର୍ବକ ମିଥ୍ୟା କଥନ" ।

ବିଶାଖାଙ୍କ ଚକ୍ଷୁ ଅରକ୍ତବର୍ଣ୍ଣ ହୋଇଗଲା କିନ୍ତୁ କ୍ରୋଧ ଗୋପନ କରିବା ସଙ୍କେତରେ ଚକ୍ଷୁ ମର୍ଦ୍ଦନ କରି କହିଲେ "ମିଥ୍ୟା ! ଏହାକୁ ଲୋକେ ମିଥ୍ୟା କହନ୍ତି ? ମୋହର ବିବେଚନାରେ ଏହା ପାପ-ନୁହେ କିମ୍ବା ଧର୍ମ । ଏବେ କାରାଗୃହରୁ ପଳାୟନ କରି ତଦ୍ ବିଷୟରେ ନାନା ଝଞ୍ଜଟ କାରଣରେ ପ୍ରବୃତ୍ତ ହୋଇ 'ମୁଁ ସତ୍ୟବାଦୀ' ବୋଲି ଚିହ୍ନାଇ ଦେବା କେବଳ ମୂର୍ଖପଣିଆ" । ବିଶାଖାର ଏତାଦୃଶ କଟୂକ୍ତି ଶ୍ରବଣ କରି ସତ୍ୟବତୀର ହୃଦୟ ଆନ୍ଦୋଳିତ ଓ ମୁଖ ମଣ୍ଡଳ ପାଣ୍ଡୁବର୍ଣ୍ଣ ହୋଇଗଲା ଏବଂ ଗମ୍ଭୀର ସ୍ୱରରେ ପ୍ରକାଶ କଲେ ଯେ "ମୁଁ ନିର୍ଦ୍ଦୋଷୀ ହେଲି ତୁମ୍ଭେ ବିଶ୍ୱାସ କରିଥିଲ ପରି ମୁଁ ସୁଖିଥିଲି" । ବିଶାଖା କପଟ ଦୁଃଖ ପ୍ରକାଶ କରି ଦ୍ରୁତ ବେଗରେ ସତ୍ୟଙ୍କ ନିକଟକୁ ଯାଇ ତାହାଙ୍କୁ ଆଲିଙ୍ଗନ କରି କହିଲେ "ପ୍ରିୟେ, ମୁଁ ସେହିପରି ବିଶ୍ୱାସ କରିଅଛି; ଯେଉଁ ଦୋଷ ଲାଗି ତତେ ଏହି ଘୋର କାରାଦଣ୍ଡ ଭୋଗ କରିବାକୁ ହେଲା, ତୁ କଦାପି ସେହି ଦୋଷରେ ଦୋଷୀ ନୋହୁ, ମାତ୍ର ତୁ ନିର୍ଦ୍ଦୋଷୀ ବୋଲି ନିଜେ ପ୍ରମାଣ ଦେବାଯାଏ, ଲୋକେ ତାହା ବିଶ୍ୱାସ କରିବେ ନାହିଁ, ଏଥି ହେତୁ ସାଧାରଣରେ

ସ୍ତ୍ରୀମାନେ ଯାହା କରିବାକୁ ଅସମର୍ଥ ହୁଅନ୍ତି, ତାହା କରିବା ପାଇଁ ତୁ କୁଣ୍ଠିତା ହେବା ଅନୁଚିତ । ମୋର ପ୍ରସ୍ତାବ ଦ୍ୱାରା ତୁ କାହାର କିଛି ହାନି କରିବୁ ନାହିଁ, ପରନ୍ତୁ ଏଥିରେ ଯଦି ଦେବୀଚାଦ୍ ଦସ୍ୟୁନିଧି ସିଂହ ଏହି କଥା ଜାଣି ପାରନ୍ତି, ସେ ତୋତେଠାରେ ବିଶେଷ କୃତଜ୍ଞ ହେବେ ।"

ସତ୍ୟ—ତେବେ ଦସ୍ୟୁନିଧି ସିଂହ ଏକଥା ଏବେ କିଛି ଜାଣି ପାରିବେ ନାହିଁ ?

ବିଶାଖା—ନାଁ, ସେ ଆଜିଯାଏ କିଛି ଜାଣିବେ ନାହିଁ, ସେ ଅନ୍ୟ ପ୍ରକାରରେ ରହିବାକୁ ହେବ । ମୋର ବିଜୟ ସେହି ବେଳକୁ ଅନେକ ସମୟ ଲାଗିପାରେ, ସେ ପର୍ଯ୍ୟନ୍ତ ସେ କିଛି ଜାଣି ପାରିବେନାହିଁ ।

ସତ୍ୟ—ଅଚ୍ଛା ତୁମ୍ଭେ ତାହାଙ୍କୁ କେଉଁରୂପେ ଠକିବାକୁ ଇଚ୍ଛା କରିଅଛ, ମୁଁ ତ ତୁମର ସଙ୍ଗ ଛାଡ଼ି ନେଇ ନାହିଁ । ଯଥାର୍ଥରେ ମୁଁ ଉଦ୍ଦିଷ୍ଟ କନ୍ୟା ନୁହେ ବୋଲି ସେ ଅବଶ୍ୟ ଜାଣିପାରିବେ, ଏବାଦ୍ ମୋହର ଏହି ଲଜ୍ଜିତ ମୁଣ୍ଡ—

ବିଶାଖା—ସେ ଆଶଙ୍କା କିଛି ନାହିଁ, ମୁଁ ଏଥି ବିଷୟରେ ସମ୍ପୂର୍ଣ୍ଣ ଜାଣିଅଛି । ଅଳ୍ପଦିନ ପୂର୍ବେ ମୋର ଦୁହିତା ଜ୍ୱର ପୀଡ଼ିତା ଥିବା ହେତୁ ତାହାର କେଶଗୁଚ୍ଛ ପତନ ହୋଇ ଯାଇଛି ବୋଲି ଆପଣଙ୍କ କହି- ଦେବ କିନ୍ତୁ ଏହି ସାମାନ୍ୟ ପ୍ରଭେଦ ସବୁ ଅକିଞ୍ଚିତ୍କର, କାରଣ ଦସ୍ୟୁ- ନିଧି ସିଂହ ମୋର ଦୁହିତାକୁ ଏଥିପୂର୍ବେ କେବେ ଦେଖି ନାହାନ୍ତି ।

ସତ୍ୟ—ତୁମ୍ଭ କନ୍ୟାକୁ ସେ କେବେ ଦେଖି ନାହାନ୍ତି ? ଏକଣ ? କନ୍ୟା ନଦେଖି ବିବାହ ସ୍ଥିର କରି ଅଛନ୍ତି, ଏହାତ ସଜ୍ଜନକୁଳର ରୀତି ନୁହେ ।

ଚଣ୍ଡାକ୍ଷ—ନା, ତାଙ୍କୁ ନଦେଖିବାର କେବଳ ନୁହେଁ, ତାଙ୍କ ଚେହେରା ସୁଦ୍ଧା ଦେଖି ନାହାନ୍ତି ।

ସତ୍ୟ—ଅହୋ ! ଏ କି ଅନ୍ୟାୟ ! କେବଳ ଧନ ଲୋଭରେ ତୁମ୍ଭ କନ୍ୟାଙ୍କ ପାଣିଗ୍ରହଣ କରିବାକୁ ଦୟାନିଧି ସିଂହ ସ୍ୱୀକାର ହୋଇଥିଲେ ? ଏହି ଗର୍ହିତ ପ୍ରଥା ଆଜିକାଲି ହିନ୍ଦୁମାନଙ୍କ ଉତ୍କୃଷ୍ଟ ଜାତି ମାନଙ୍କ ମଧ୍ୟେ ପ୍ରଚଳିତ ଥିବାର ସତ, କିନ୍ତୁ ରାଜକୁଳରେ ଏତାଦୃଶ ଘଟଣା ଏହା ସର୍ବ-ପ୍ରଥମ ପରିଦୃଶ୍ୟ ହୁଏ । ଯାହାହେଉ ଦୟାନିଧି ସିଂହ ଯେଉଁ ସ୍ଥାନରେ ବାସ କରୁଅଛନ୍ତି ସେହି ଅଞ୍ଚଳର ଅନେକ ବ୍ୟକ୍ତି ମତେ ଚିହ୍ନନ୍ତି, ଯଦି ଜାଣିପାରନ୍ତି ତେବେ ତୁମ୍ଭର ଓ ମୋହର ସର୍ବନାଶ ହେବ ।

ଚଣ୍ଡାକ୍ଷ—ତୁମ୍ଭେ ତଦ୍ରୂପ ଆଶଙ୍କା କରିବା ଅନାବଶ୍ୟକ । ଗତ ଦଶ ବର୍ଷ ମଧ୍ୟରେ ତୁମ୍ଭର ରୂପ ଓ କାନ୍ତି ଏତେ ପରିବର୍ତ୍ତିତ ହୋଇ-ଯାଇଅଛି ଯେ କେହି ତୁମ୍ଭକୁ ନିଶ୍ଚୟରେ ଚିହ୍ନି ପାରିବେ ନାହିଁ । ଅତ-ଏବ ମୋହର ଅନୁରୋଧ ଏହି ଯେ, ତୁମ୍ଭେ ପ୍ରସ୍ତାବିତ କାର୍ଯ୍ୟଟି ସାଧନ କରି ମୋହର ମହତ୍ତ୍ୱ ରକ୍ଷା କରିବ ଏବଂ ବର୍ତ୍ତମାନ ଅବସ୍ଥାରେ ତୁମ୍ଭର ପିତା ସୁଦ୍ଧା ତୁମ୍ଭଙ୍କୁ ଚିହ୍ନି ପାରିବା ଦୂରର କଥା । ଯାହାହେଉ ତୁମ୍ଭର ସେହି ମନୋମୁଗ୍ଧକର ଗୁହାଣି ଯାଇନାହିଁ । ମୋହର ଅନୁରୋଧ ଏହି ଯେ ମୋର ଲାଗି ତୁମ୍ଭେ ଏହା କରିବାକୁ ହେବ, ମହାପ୍ରଭୁଙ୍କ ନାମ ପକାଇ କହୁଅଛି 'ହଁ କର' । ସତ୍ୟବତୀଙ୍କ ଶରୀର କମ୍ପିଲା । ସେ କହିଲେ "ଓହୋ, ଯଦି କେହି ମତେ ଚିହ୍ନିପାରି "ଏ କୋଉଠି ନୁହେଁ, ବାରବୁଲା ପଳାୟିତ ସତ୍ୟବତୀ" କହି ଦିଅନ୍ତି, ତେବେ ତୁମ୍ଭେ ଅପ-ମାନିତ ହେବ ଏବଂ ସେହି ଦିନଠୁ ହାଜତରେ ମୋହର ଜୀବନବାସ ଅନିବାର୍ଯ୍ୟ ହେବ । ନାହିଁ ନାହିଁ, ଏତାଦୃଶ ଆପଦଜନକ ଅଦ୍ଭୁତ ବ୍ୟବ-ହାର ମୁଁ କରି ନପାରେ" । ଚଣ୍ଡାକ୍ଷ କ୍ରୋଧିତ ହୋଇ କହିଲେ "ତୁମ୍ଭେ

ତାହା ନହେଲେ ରକ୍ଷା ନାହିଁ । ନିଜ ଘରକୁ ଯାଇ ପାରିବ ନାହିଁ । ତୁମ୍ଭର ରକ୍ଷଣାବେକ୍ଷଣ ପାଇଁ କିଏ ଧନ ଦେବ ନାହିଁ । ତୁମ୍ଭେ ପ୍ରକୃତ ଦୋଷୀ ବୋଲି ଏବଂ ଏହି ପଳାୟନ ଦ୍ୱାରା ପୁନର୍ବାର ତୁମ୍ଭ ଅକଳଙ୍କିତ କୁଳକୁ ବାରମ୍ବାର କଳଙ୍କିତ କରୁଅଛ ବୋଲି ତୁମ୍ଭ ପିତା ତୁମ୍ଭ ପ୍ରତି ପରାଙ୍ମୁଖ ହୋଇଅଛନ୍ତି, ଅତଏବ ପ୍ରସ୍ତାବିତ ଉପାୟ ବିନା ପୋଲିସ ହସ୍ତରୁ ଉଦ୍ଧାର ପାଇବା ସମ୍ଭାବନା ନାହିଁ । ମୁଁ ସାଧମତେ ଯତ୍ନକରି ତୁମ୍ଭକୁ କୋଉ ରଷ୍ଟି ଟିମା ଦେଶକୁ ନେଇ ପ୍ରଚୁର ସମ୍ପତ୍ତି ଦେଇ ସୁଖରେ ରଖାଇବି । ଅତଏବ ମୋହର କଥା ଶୁଣ" । ହତଭାଗା କିଛିକାଳ ନିରୁତ୍ତର ହୋଇ କହିଲେ, "ଏତାଦୃଶ ପ୍ରବଞ୍ଚନା କରିବା ଓ ମିଥ୍ୟା କହିବା ସକାଶେ ମତେ ବଳାତ୍କାର କରୁଅଛ ?"

ବଣୀଖା ବିକଟ ହାସ ପ୍ରକାଶ କରି କହିଲେ "ରେ ନିର୍ବୋଧ ବାଳିକା; ମୁଁ ଏ ଯାବତ୍ କହିଲି ଯେ ମିଥ୍ୟା କହି କାହାର କିଛି କ୍ଷତି ହୋଇନାହିଁ ବରଂ ତଦ୍ୱାରା ଅନେକେ ଅଟ୍ଟାଳିକା ବନାଇ ଅଛନ୍ତି ଓ ବଡ଼ ଲୋକରେ ଗଣିତ ହୋଇଅଛନ୍ତି । କେଉଁ ଅସଭ୍ୟ ଯୁଗରେ ମିଥ୍ୟାକୁ ଲୋକେ ଡରୁଥିଲେ ଅଜି କାଲି ତ ତାହା ଜୀବିକା ହୋଇଅଛି । ସତ୍ୟ କହିବା ଓ କର୍ତ୍ତବ୍ୟ ପାଳନ କରିବା ଫଳତ ନିଜେ ଦେଖି କରୁଛି, ଅଧିକ କହିବ କଣ ? ଅଉ ଅଜାଇଲେ ଫଳନାହିଁ, ଶୀଘ୍ର ମନ ଦୃଢ଼କରି, "ମୋର ପିଲା ହଜିଥିଲା ମିଳିଲା" ବୋଲି କହିଦେବ । ତୁମ୍ଭର ଝିଅ ରୂପରେ କେତେକାଳ ପରିଚିତ ହେବ । ପରେ ତାକୁ ଗୁପ୍ତ ଭାବେ ଖେଳାଇ ତତେ ଅନ୍ୟ ଉପାୟରେ ବଞ୍ଚାଇବ । ହେଇଟି ଦେଖ ତୋର ଦେଖିବା ପାଇଁ ତଯ୍ୟାର କରିଥିବା ପୋଷାକ ଯେପରି ମନୋହର ହୋଇଅଛି, ଅତର ପିନ୍ଧାଇ ଦେବ, ଦେଖ ଅଗ୍ର ବେଶ ହେଲା । ଓହୋ । ମୁହଁ, ନାକ, ଚକ୍ଷୁଚିବୁକ ସବୁ ଭଲ ଯାଉଛି । ଡିକ୍

ମୋହର ହିଅ ଫେର ବଞ୍ଚିଲେ । ଅବଶ୍ୟ ମୋର ମନୋରଥ ପୂରଣ ହେବ । ”

ସତ୍ୟବତୀ ଦୁଇ ହାତ ମୁଣ୍ଡରେ ଥୋଇ ହତବୁଦ୍ଧି ପ୍ରାୟ କହିଲେ, “ନାହିଁ, ନାହିଁ, ମୁଁ ଏହି ମନ୍ଦକୃତ୍ୟ କରି ନ ପାରେ ଓ କରିବି ନାହିଁ । ଲୋକେ ମିଥ୍ୟା କହି ମୋହର ଅମଙ୍ଗଳ ସାଧନ କଲେ ବୋଲି ମୁଁ ହୁଙ୍କା ମିଥ୍ୟା କହିବି ? ଏକି କଥା ଗୋ ବିଶାଖା ! ତୁମେ ମୋହର ଧର୍ମର ମା । ତୁମ୍ଭେ ଦୟା କରି ନଥିଲେ ମୁଁ କେତେବେଳକୁ ସୁନପି କାଳକୁକ୍ଷି ହୋଇଥାନ୍ତି । ମନ ଏପରି କରିବାକୁ ମତେ କହ ନାହିଁ । ତୁମ୍ଭଙ୍କୁ ସନ୍ତୋଷ କରିବା ଲାଗି ଏବଂ ତୁମ୍ଭ କନ୍ୟାଙ୍କ ପୁନଃପ୍ରାପ୍ତି ଲାଗି ପ୍ରାଣ ଦେବା ଦେଇପାରେ କିନ୍ତୁ ପ୍ରବଞ୍ଚନା କଥା ଶ୍ରବଣ କରି ମୋହର ଆତ୍ମା ଥରୁଅଛି” । ଏହି ଉକ୍ତି ଶ୍ରବଣ କରି ବିଶାଖା ଚିନ୍ତାନ୍ୱିତା ହେଲେ । କିନ୍ତୁ ଉପସ୍ଥିତ କାର୍ଯ୍ୟ ବିବେଚନାରେ ଅନୁଭବ ଗୋପନ କରି କହିଲେ “ଅଚ୍ଛା ସତ୍ୟ, ଦର୍ପଣ ପାଖକୁ ଯାଇ ପୋଷାକଟି ଉପର ସାଜୁଅଛି ଦେଖ” । ଏମନ୍ତ ସମୟରେ କବାଟରେ କରାଘାତ ହେଲା । ତାହା ଶ୍ରବଣ କରି ସତ୍ୟବତୀ ଭୟରେ ପାଣ୍ଡୁର ବର୍ଣ୍ଣ ହୋଇଗଲେ, “ତୁମ୍ଭେ ଦର୍ପଣକୁ ମୁହଁ କରିଥାଅ, ଅନ୍ୟଆଡେ଼ ଚାହିଁନା, କବାଟ କିଏ ମାରୁଅଛି ମୁଁ ଯାଇ ଦେଖି ଆସେ” । ଏହି ରୂପେ କହି ବିଶାଖା ଦ୍ୱାର ନିକଟକୁ ଯାଇ କବାଟ ଫିଟାଇଲେ, ଦେଖିଲେ ଯେ ଯମଦୂତଙ୍କ ପରି ଦୁଇଜଣ କନଷ୍ଟେବଲ ଦ୍ୱାର ଦେଶରେ ଦଣ୍ଡାୟମାନ ହୋଇଅଛନ୍ତି । ବିଶାଖାଙ୍କୁ ଦେଖି ସେମାନେ କହିଲେ “ଜେଲଖାନାରୁ” ଲୁଚି ପଳାଇ ଯିବା ଏକଜଣ ଦୋଷୀ ଏହି ଘରେ ଅଳ୍ପକାଳ ପୂର୍ବେ ପ୍ରବେଶ କରି ଲୁଚି ରହିଅଛି ବୋଲି ଆମ୍ଭେ ସମ୍ବାଦ ପାଇଅଛୁ; ଏଣିକି ଆମ୍ଭେ ଏହି ଗୃହ ଅନୁସନ୍ଧାନ କରିବୁ” । ବିଶାଖା କିଛିକ୍ଷଣ

ବିବେଚନା କର, ଧୈର୍ଯ୍ୟଧର ଉତ୍ତର ଦେଲେ, "ଏହି ଘରେ ମୋର ଦୁହିତା ବିନା ଅନ୍ୟ କେହି ନାହିଁ । ଇଚ୍ଛା ହେଲେ ତୁମ୍ଭେ ପରିଶୋଧ କରିପାର"। ଏତିକି ମାତ୍ର କହି କବାଟ ମେଲି ଦେଲେ ଏବଂ ପୋଲିସଙ୍କ ପ୍ରତି ବିରକ୍ତ ହୋଇ ପର ମୁହଁ ଫେରାଇ ସତ୍ୟବତୀ ଅନ୍ତଃକୁ ଦ୍ରୁତ-ବେଗରେ ଚାଲିଗଲେ । ଏବଂ ଉପସ୍ଥିତ ଘଟଣା ଦ୍ୱାରା ଲେଶମାତ୍ର ବିଚ-ଳିତ ନହୋଇ ପର ସତ୍ୟବତୀ ସହିତ ନିମ୍ନମତେ ଆଳାପ କଲେ ।

"କଲେ ଝିଅ ! ପୋଷାକଟି ତ ସୁନ୍ଦର ହୋଇଅଛି ଦର୍ପଣରେ କଣ ଏତେ ଦେଖୁଛୁ । ତାଠାରୁ ଅଧିକଟିଏ କୋଉଠୁ ଆଣିବି ? ତୋର ରୂପକୁ ପୋଷାକଟିର ଝଲ ସମାନ ହୋଇଅଛି । ପ୍ରସ୍ଥାଣ କଷ୍ଟ ହେଉ ତୁ ଟିକିଏ ଯେଉଁଆ ଦଶୁଛୁ, ତାହା କଅଣ ସବୁବେଳେ ରହିବ" ? ବିଶାଖାର କୌଶଳ ଓ ଚାତୁରୀ ବଶରୁ ସତ୍ୟବତୀ ପ୍ରତି ପୋଲିସ ଲୋକେ ସନ୍ଦେହ କରିପାରିଲେ ନାହିଁ । ଘର ସବୁ ଖୋଲି ଖୋଜି ପରିଶେଷରେ ବିଶାଖାଠାରେ କ୍ଷମା ପ୍ରାର୍ଥନା କରି ଚାଲିଗଲେ ।

ସେମାନେ ଯଥେଷ୍ଟ ଦୂର ପ୍ରସ୍ଥାନ କରନ୍ତେ ବିଶାଖା କହିଲେ "ସତ୍ୟ, ଏହି ପୋଷାକ ତତେ ବଡ଼ା କଲା । ଅଗ୍ରାକରେ ତୁ ତାକୁ ଆଦର ସହ ପରିଧାନ କରିବୁ ଓ ତଦ୍ୱାରା ଏହି ଦୁଃଖିନୀର ମନୋରଥ ପୂରଣ କରିବୁ । ସତ୍ୟ, ମୋହର ପ୍ରସ୍ତାବ ଅନୁମୋଦନ କରିବୁ ତ ?"

"ଧରି ନାରିଲେ ଦେବତାଏ ସାଧୁ ହୁଅନ୍ତି" । କିଛିକ୍ଷଣ ମୌନ ହୋଇ, ଭୟ ବିହ୍ୱଳା ସତ୍ୟବତୀ କ୍ଷୀଣ ସ୍ୱରରେ ଉତ୍ତର ଦେଲେ "ଆଈ ତୁମ୍ଭେ ଯାହା କହିବ ତାହା କରିବି । କିନ୍ତୁ, ପୋଲିସ ଦ୍ୱାରା ଧୃତ ହୋଇ ପୁନର୍ବି ଜେଲଖାନାକୁ ଯେଉଁପରି ନଯାଏ ତାହା ତୁମ୍ଭ ହସ୍ତରେ ରହିଲା" ।

ପାରୁଛୁ ! ଆଜି ଦିନର କାର୍ଯ୍ୟ ଶେଷ ହେଲେ ତୋହର ସଙ୍ଗେ ନେଇ ଦୂତଙ୍କୁ ଧରି ବ୍ୟସ୍ତ କରି, ଉପଯୁକ୍ତ ଅନୁସନ୍ଧାନଦକ୍ଷ ଲୋକଙ୍କୁ ନିଯୁକ୍ତ କରି, ଯେଉଁ ଅପରାଧ ଲାଗି ତୋତେ ବୃଥା ଦଣ୍ଡ ଦେଇଅଛନ୍ତି, ତତ୍ସ-ମ୍ବନ୍ଧେ ପ୍ରକୃତ ଅପରାଧୀଙ୍କୁ ଧରାଇ ତୋହର ନିରପରାଧିତା କରିବାକୁ ପ୍ରାଣ ପଣରେ ଯତ୍ନ କରିବି” । କଥୋପକଥନ କରୁ କରୁ ଦୟାନିଧି ସିଂହଙ୍କ ପ୍ରାସାଦ ନିକଟବର୍ତ୍ତୀ ହେଲା, ବିଶାଖା କହିଲେ “ହେଇଟି, ରାଜପ୍ରାସାଦ” । ହନ୍ୟଚଣ ଅକସ୍ମାତ୍ ଅଧୈର୍ଯ୍ୟ ହୋଇ ପଡ଼ିଲେ ଓ କହିଲେ “ଜଗତରେ କେବେ କେଉଁ କନ୍ୟା ମୋହ ପରି ଏତାଦୃଶ ସାହସ କରିଥିବ ସନ୍ଦେହ । ଅହା ! ମୋହ ଭାଗ୍ୟରେ ଥିଲା ଯେ ‘ପଞ୍ଚମ କନ୍ୟା’ ହେବି । ମୁଁ ଶୁଣିଥିଲି ଯେ ଅଜକାଲି ସହିତ୍ୟ, କରଣ ଇତ୍ୟାଦି ନବଢେକ ଜାତରେ ଜାଣି, ଭୂଜ କନ୍ୟାଥିଲେ ଭଲ କନ୍ୟା-ଟିଏ ଦେଖାଇ ଦେଇ ବିବାହ ସମୟରେ କାଣି କୁଜକୁ ବସାଇ ହସ୍ତ ଭଙ୍ଗି ଦେଇ ଦିଅନ୍ତି, ମୋହ ପକ୍ଷ ସେହି ଦଶା ଘଟିଲା ।” ଏହି ରୂପ କହୁ କହୁ ଜାଡ଼ ସିଂହଙ୍କ ଦ୍ୱାର ଦେଶରେ ପହୁଞ୍ଚିଲେ । ବିଶାଖା ସଙ୍ଗୀର କର୍ଣ୍ଣରେ ଧୀରେ କରି କହିଲେ “ମୁଁ କହିବା କଥା ମନେ ରଖିଥିବୁ ତୁ କିଛି ଅଧୈର୍ଯ୍ୟ ହୁଅ ନାହିଁ । ସାହସ ଲକ୍ଷ୍ମୀ ଅଟେ । ତାହାଙ୍କୁ ଅଲିଙ୍ଗନ କର; ସକଳ କାର୍ଯ୍ୟ ସୁରୂରୁ ରୂପେ ସାଧିତ ହେବ ।”

ହନ୍ୟ—ଅଚ୍ଛା, ବିଶାଖା ! ସିଂହଙ୍କ ମା କପର ଲୋକ ?

ବିଶାଖା—ସୁରେଖା ଜଣେ କୌତୁକନୀ । କିନ୍ତୁ ଦୂର୍ବ ଧନଣର ବିଷଣ ଝିଅ । ରାଜପୁତମାନେ ଖାଣ୍ଟି ରାଜ ବଂଶଜ କନ୍ୟାବିନା ଅନ୍ୟ କାହାରି ସହିତ ବିବାହ ହେବା ଅତୀବ ଗର୍ହିତ ମନେ । ଧନ ପ୍ରତି ଟିକିଏ ଭକ୍ତି କରେ ନାହିଁ । କୁଳ ଜାତ କେବଳ ତାହାର ସର୍ବସ୍ୱ

କିନ୍ତୁ ଏହି ବିବାହ ସମ୍ବନ୍ଧ ସେ ଅହଙ୍କାର ସବୁ ଛଡ଼ାଇ ଦେଇଅଛି । ଅର୍ଥାଭାବ ତାହାର ଏକମାତ୍ର କାରଣ । ପେଟ ପୋଡ଼ିଲେ ପାଣ ପଟିରୁ ପଣତ ପସାରିବା ନ୍ୟାୟ ।

ମୋକ୍ତାର ବାବୁ ସେ'ହେଙ୍କ ଦ୍ୱାରଦେଶରେ ଉପସ୍ଥିତ । ନତ ମସ୍ତକ ହୋଇ ବରକନ୍ୟାମାନେ ପାଦସ୍ପର୍ଶ କଲେ । ସ୍ତ୍ରୀ ତ୍ରୟ ଦାଣ୍ଡ ଦରଜାରେ ପ୍ରବେଶ କରିଅଛନ୍ତି ଜଣେ ଅର୍ଦ୍ଧବୃଦ୍ଧା ସ୍ତ୍ରୀ ଓ ଜଣେ ଯୁବା ତାଙ୍କୁ ଅଭ୍ୟର୍ଥନା କରିବା ଲାଗି ଅଗ୍ରସର ହେଉଛନ୍ତି । ଏମାନେ କିଏ ପାଠକେ ଅନୁମାନ କରି ପାରିବେ ।

ବରକନ୍ୟା ଦେଖା ସାକ୍ଷାତରେ ବରଘରଠାରୁ କନ୍ୟା ନିଜ ମାତା ସହିତ ଯିବା କଥା ପାଠକଗଣଙ୍କୁ କିଛିଏ ଅଦ୍ଭୁତ ବୋଧ ହେବ । ଅଜି-କାଲି ସାମାନ୍ୟ ଶିକ୍ଷିତ ଲୋକେ ବୁଝିବା ପାଶ୍ଚାତ୍ୟ ସଭ୍ୟତାର ପ୍ରୟୋଗ । ବିବାହ ପୂର୍ବେ ସ୍ତ୍ରୀ ପୁରୁଷଙ୍କର ପରସ୍ପର ଦର୍ଶନ ଓ ମନ ମିଳନ ପ୍ରଥା ଦିନକୁ ଦିନ ପ୍ରବଳ ହୋଇ ଆସୁଅଛି । ହିନ୍ଦୁ ଧର୍ମ କିଏ ନିବାରଣ କରିପାରିବ ?

ସତ୍ୟ ଅବଗୁଣ୍ଠନବତୀ ହୋଇଥିଲେ । କିନ୍ତୁ ମୁଣ୍ଡ ଟେକି ତାଙ୍କ ଅଡ଼କୁ ଅଗ୍ରସର ହେବା ଯୁବକଙ୍କୁ ଦେଖିବା ମାତ୍ରେ ଚମକି ପଡ଼ିଲେ, ନିଜର ଇନ୍ଦ୍ରିୟଗଣଙ୍କୁ ବିଶ୍ୱାସ କଲେ ନାହିଁ । ସ୍ୱପ୍ନ ଦେଖିଲା ପରି ଲାଗିଲା । କିନ୍ତୁ କି ବିଚିତ୍ର ଘଟଣା ! ଜେଲଖାନାରୁ ପଳାୟନ କରି, ଜଣେ ମାତ୍ସ୍ୟବନ୍ତ ହସ୍ତରେ ପଡ଼ି, ଦୈବଶକ୍ତିରେ ସେହି ପୁରୁଷଙ୍କ ପ୍ରଲୋ-ଭନ ଦ୍ୱାରା ସରଣରୁ ସୂତ୍ରରେ ଆବଦ୍ଧ କରି ଯାହାରେ ପଡ଼ିଲ ହେବାର ଯେଉଁ ଆଶଙ୍କା କରିଥିଲା, ତାହାରୁ ପୂର୍ବ ପରିଚିତ କିନ୍ତୁ ଅଜ୍ଞାତ କୁଳ ଶୀଳ, ପରମାନନ୍ଦ ଦାୟକ, ପବିତ୍ର ପ୍ରେମ ପରସ୍ପରରୁ ମୁକ୍ତ ପଙ୍କଜ

ଲଗ୍ନ ଦର୍ଶନ କରି ତାହା କାହିଁ ଦୂର ହୋଇଗଲା; ସେହି ନୈରାଶ୍ୟ ଜର୍ଜ୍ଜରିତ କିନ୍ତୁ ନିଷ୍ପାପ ଓ ନିର୍ମଳ ହୃଦୟ କେଦାରଙ୍କର ଆଶା ଅଙ୍କୁରିତ ହେଲା । ମନରେ ନାନା ବିଷମ ଭାବ ଉଦୟ ହୋଇ ଆଉ ପାଦ ଚଳିଲା ନାହିଁ । କାଷ୍ଠପୁତ୍ତଳିକା ପରି ଦଣ୍ଡାୟମାନ ହେଲେ, ବାମ ଚକ୍ଷୁ ଚଞ୍ଚଳ ବେଗରେ ନୃତ୍ୟ କଲା, ସର୍ବଶରୀର ସ୍ୱର୍ଗୀୟ ସମ୍ପତ୍ତି ସମ୍ପନ୍ନ ହେଲାପରି ଦୃଷ୍ଟି ହେଲା । ବଦନମଣ୍ଡଳ କୁଣ୍ଠିତ କିନ୍ତୁ କୁଞ୍ଚିତ କୃଷ୍ଣକେଶ ମଧ୍ୟରେ ଶରତ୍କାଳୀନ ଘନମେଘମୁକ୍ତ ଚନ୍ଦ୍ରମଣ୍ଡଳ ପରି ପ୍ରକାଶିତ ହେଲା । ମନେ ହେଲା ତତ୍କ୍ଷଣେ ଆତ୍ମପରିଚୟ ଦେଇ କ୍ଷମା ପ୍ରାର୍ଥନା କରିବେ, କିନ୍ତୁ ସତ୍ୟବତୀଙ୍କର ଏହି ଅପୂର୍ବ ଭାବ ନିରୀକ୍ଷଣ କରି ଚତୁରା ବିନ୍ଦା ଅଙ୍ଗୁଳି ତର୍ଜ୍ଜନ ଓ ବକ୍ର ଦୃଷ୍ଟି ଦ୍ୱାରା ତାହାଙ୍କୁ ସତର୍କ କରାଇଲେ । ସତ୍ୟ ସଚେତ ହୋଇ ଗଲେ, ନିଜର ଅବସ୍ଥା ଏବଂ ଶିବାଳାଠାରେ କରିଥିବା ବାଗ୍ଦାନ ମନେ ପଡ଼ିଲା, ରାହୁଗ୍ରସ୍ତ ଚନ୍ଦ୍ର ପରି ମୁଖ ମଳିନ ହୋଇଗଲା । ମୁଣ୍ଡ ନୁଆଁଇ କଣ କରିବେ ଏହା ଭାବିବାକୁ ଲାଗିଲେ ।

ତେବେଣେ ଦୟାନିଧି ସିଂହଙ୍କର ଆନନ୍ଦର ସୀମା ନାହିଁ । ସେ ଭାବିଥିଲେ ଯେ ପ୍ରସ୍ତାବିତ ବୈବାହିକ ସମ୍ବନ୍ଧ ଦ୍ୱାରା ତାଙ୍କର ଜୀବନବ୍ୟାପୀ ଦୁଃଖ ହେବ । ସେ ଉକ୍ତ ସମ୍ବନ୍ଧର ସମ୍ପୂର୍ଣ୍ଣ ବିପକ୍ଷ । ତାଙ୍କ ଜନନୀ କେବଳ ଧନ ଲୋଭରେ ଏହି ସମ୍ବନ୍ଧ ଲଗାଇବା ପାଇଁ ସ୍ଥିର କରିଥିଲେ । ରାଣୀ ମାତାଙ୍କ ଆଜ୍ଞା ଲଙ୍ଘନ ଆଶଙ୍କାରେ ଅଗତ୍ୟା ସମ୍ମତି ପ୍ରଦାନ କରିଥିଲେ; ଆଜି ଅପରିଚିତା ଲୋକଙ୍କର ଦର୍ଶନ ଅବଧି କଅଣ କରିବେ ସେ ସ୍ଥିର କରିପାରି ନଥିଲେ । ଅବଶ୍ୟ ଆଜି ତାଙ୍କ ଜୀବନର ଗୋଟିଏ ଦୁର୍ଦ୍ଦିନ ବୋଲି ମନେ କରିଥିଲେ; କିନ୍ତୁ ବିଧାତାର ବିଧାନ ବିଚିତ୍ର ଓ ନିର୍ବୋଧ ନରନାରୀର ବୁଦ୍ଧିର ଅଗୋଚର । ସହସା ସତ୍ୟବତୀଙ୍କୁ ସମ୍ମୁଖରେ

ଦେବା ପୂର୍ବେ ଦୟାନିଧି କହିଲେ, "ଯାଅ ମା ସେ ସବୁ ଦୈବ ଘଟଣା; ଦେଖ, ଦୁଇଥର ମିଳାମିଶି ସୁଦ୍ଧା ମୁଁ ତାଙ୍କ ନାମ ଧାମ କିଛି ବୁଝି ପାରିନଥିଲି । ମାତ୍ର ମୁଁ ତାଙ୍କୁ ପାଶୋରି ନାହିଁ ଓ ଆଶାକରେ ସେ ସୁଦ୍ଧା ମତେ ପାଶୋରି ନଥିବେ"। "ନାହିଁ ମୁଁ କଦାପି ପାଶୋରି ନାହିଁ" ବୋଲି ଅବତ୍ୟା ସତ୍ୟ କହିଦେଲେ । ସୁରେଖା କହିଲେ "ଖେଳିବାର ସମୟ ଉପସ୍ଥିତ ହୋଇ ଯିବା" । ସୁରେଖାଙ୍କୁ ଯଥୋଚିତ ମାନ୍ୟ କରି ବିଶାଖା ନିଜ ବସାଘରକୁ ପ୍ରସ୍ଥାନ କଲେ ଓ ଜଣେ ଦାସୀକୁ ପଠାଇବା ପାଇଁ ଅନୁରୋଧ କରନ୍ତେ "ଏହିକ୍ଷଣି ଜଣକୁ ପଠାଉ ଅଛି" କହି ସୁରେଖା ଭିତରକୁ ଗଲେ ।

ବିଶାଖା ଓ ସତ୍ୟ ସୁସଜ୍ଜିତ ଦେଶାଘରେ ପ୍ରବେଶ କରନ୍ତେ ବିଶାଖା କହିଲେ "ମା, ସତ୍ୟ ! ତୁ ଅତ୍ୟନ୍ତ କ୍ଲାନ୍ତ ହୋଇଅଛୁ, କିଛି କ୍ଷଣ ବିଶ୍ରାମ କର, ମୁଁ ଏହି ଦାସୀର ସାହାଯ୍ୟରେ ଅନ୍ୟ ଜଳସେକ ପଳାଡ଼ ଅନତିବିଳମ୍ବରେ ତୋହର ବେଶଭୂଷାର ବନ୍ଦୋବସ୍ତ କରିବି ! ସତ୍ୟ ! ଏକ ବଚନ; ତୁ ପୂର୍ବାପେକ୍ଷା ଅଧିକ ମନୋହର ଦିଶୁଅଛୁ । ଅନୁମାନ କରେ ଯେ, ତୁ ସିଂହଙ୍କୁ ପ୍ରେମ କରୁ; ଏହାପୂର୍ବେ ତୁମ୍ଭ ଦୁହିଙ୍କର ଦୁଇଥର ମିଳନ ହୋଇଥିବା କଥା ମୋହର ଅପରିଚିତ ଥିଲା। ବଡ଼ ଅଦ୍ଭୁତ କଥା; ସିଂହଙ୍କ ମୁଖରୁ ଏହା ଶୁଣିବା ମାତ୍ରେ ମୋହର ସାହସ ଉଡ଼ିଗଲା; ଅଜର କାଣ୍ଡ ସବୁ ଘଟୁଛି ଦେଖିଲି ବୋଲି ଜାଣିଲି ପ୍ରିୟ ସତ୍ୟ । ତୁ ବୃଥା ମନ ବଳାଅ ନାହିଁ, ମନେ ରଖ ଯେ ଦସ୍ୟୁଙ୍କର ସିଂହ କୋକିଳର ନିଶ୍ଚିତ ପାତ୍ର ! ସେ କଦାପି ତୋହର ହୋଇ-ନପାରନ୍ତି । ଏହି ସକଳ ପାଇଁ ତୁ ସାବଧାନରେ ସିଂହଙ୍କ ମନ ଜାଣି କରିବାକୁ ହେବ, କିନ୍ତୁ ତଦ୍ୱାରା ତୋହରସର କୋକିଳ ଓ ଦୟାନିଧି ସିଂହଙ୍କ ସନ୍ଦେହ ନ କରନ୍ତି, ତତ୍ପ୍ରତି ସତର୍କ ଥିବୁ; ସିଂହଙ୍କ ପ୍ରତି

ହୁର୍ଷୀସ୍ତୁ ସ୍ତ୍ରେନ ସତ୍ୟର ସରଳ ହୃଦୟ ଅଧିକାର କଲା ଓ ସର୍ବଦା ଜାଗ-ରୂକ ରହିଲା । ବିଶାଖା କହିଲା, "ସତ୍ୟେ, ଗୋଟାଏ କଥାରେ ମୋହର ବିଶେଷ ଶଙ୍କା ହୁଏ । କୋକିଳ ଅଦୃଶ୍ୟ ହେବା କଥା ଦୈନିକ ସମ୍ବାଦ ପତ୍ରରେ ପ୍ରକାଶ କରିଥିଲି ଓ ପ୍ରତ୍ୟେକ ପୋଲିସ ଥାନାକୁ ସୂଚନା ତାର ଯୋଗେ ଦେଇଥିଲି; ଏହି ଦୁଃସମ୍ବାଦ ଅବଶ୍ୟ ବିଶେଷ ପ୍ରଚ୍ଛ-ନ୍ନ ହୋଇଥିବ । ତୁମ୍ଭେମାନେ ଯଦି କିଛି ଜାଣିଥାନ୍ତ ତେବେ ଏ କଥା ମୋତେ ଜଣାଅ ନାହିଁ । ମାତ୍ର ମୁଁ କୋକିଳ ଯେଉଁ ଚେହେରା ଦେଖିଅଛି ତାହା ଅବିକଳ ତୋହର 'ଚେହେରା' ହୋଇପାରେ ଓ ପ୍ରୋକ୍ଷିତ ନିଜର ପତ୍ର ସୂଚନା ପତ୍ରରେ ଛପାଇ ଦେଇଅଛି; ଅତଏବ ତୁମ୍ଭେମାନେ ଯଦି କୌଣସି କଥା ଜାଣ ମୁଁ ଉପଯୁକ୍ତ ଉତ୍ତର ଦେଇ ପାରିବି । ତୁ କିଛି ଲୁଚାଇବାକୁ ବସିଲୁ ନାହିଁ । ଏତାଦୃଶ ମିଥ୍ୟା କଳ୍ପନା ଓ ଉଦ୍ୟୋଗ ରଚନାରେ ମୁଁ ଅତ୍ୟନ୍ତ ଚକିତ ହେଉଛି । ଅଜ୍ଞ ତୋହର ବର୍ତ୍ତମାନ ମୌନାବଲମ୍ବନ କରିବା ଓ ତୋର ଚକ୍ଷୁରେ ସଦାନନ୍ଦୀ ପଦ୍ଧତି ନାହିଁ । ମୋହର ବିଶ୍ୱାସ ଏହି ଯେ ତୋହର ପକ୍ଷେ କୌଣସି କଥାଟି ଅଛି ନିଶ୍ଚୟ । ଯାବତ୍ ବିପଦଗ୍ରସ୍ତ ହୋଇ ବହୁ କ୍ଲେଶ ଓ ମନଃତାପ ଭୋଗ କରି ଏବେ ଅନୁକ୍ଷଣେ ଶଙ୍କା କରୁଥିଲେ ସୁଦ୍ଧା ତୋର ମୁଖଶ୍ରୀରୁ ବିଷଣ୍ଣ ଅନ୍ଧକାର ହ୍ରାସ ହୋଇନାହିଁ ।

ସତ୍ୟେ ଉତ୍ତର କଲେ, "ନା ବିଶାଖା, ମୁଁ କିଛିକୁ ଠିକ ଜାଣିନାହିଁ; ଆଜିର ପ୍ରଥମ ଦର୍ଶନ ସମ୍ଭବତଃ ଅଜ୍ଞାତରେ କଥଣ ବା କହି ଦେଇଅଛି । ଯଦି କୌଣସି ମତେ ସେହି ମୋହ ରହସ୍ୟ ଜାଣି-ପାରିବି ତେବେ ଏତେ ଭୁଲ ମଣିବ ଓ ହେୟ ଜ୍ଞାନ କରିବେ । ମୋହର ଜୀବନ ପ୍ରତିଜ୍ଞା ଏହି ଯେ ମତେ ସବୁ କହି ଦେବାକୁ ଅନୁ-ମତି ଦିଅ"

ବିଶାଖା—ଛି ! ମୂର୍ଖା, ଏ କି ବିଚାର; ସତ କଥା ସବୁ ପଛେ ପ୍ରକାଶ ହେବ; ବାସ୍ତୁଣୀ ପରି କାହିଁକି ହେଉଅଛୁ; ସମୟୋଚିତ କାର୍ଯ୍ୟ କରିବାର ଜାଣିନାହୁଁ । ସତ କହିଲେ ପୁନଃ କାରାଗୃହରେ ପତିତ ହେବା କଥାକି ମନେ ନାହିଁ ? ମୋ କୋକିଳର ନାମ ଓ ପୋଷାକ ଲାଗି ପିତା ଭୁ ରକ୍ଷା ପାଇଅଛୁ । ଯଦି ତୁହି ତାଙ୍କୁ ଦେଇ ନିଜେ ଅପଦ-ଗ୍ରସ୍ତ ଏବଂ ମୋତେ ବିଡ଼ମ୍ବିତ କରନାହିଁ ।” ସତ୍ୟ କାରାଗୃହର ନିବାସ ସ୍ମରଣ କରି ଅଗତ୍ୟା ସମ୍ମତି ପ୍ରଦାନ କଲେ, ବିଶାଖା ସତ୍ୟଙ୍କୁ ଆଲିଙ୍ଗନ କରି ସନ୍ତୋଷ ଓ କୃତଜ୍ଞତା ସୂଚନା ପୂର୍ବକ ଚୁମ୍ବନଦାନ କଲେ । ତାହାଙ୍କ ଚକ୍ଷୁଦ୍ୱୟରୁ ଲୋତକ ଧାର ବହିଗଲା ଓ କୋକିଳର କଥା ମନେ ପକାଇ ତାହା ପାଇଁ ବିଶେଷ ସନ୍ତାପିତ ହେଲେ । ପରେ ସତ୍ୟଙ୍କୁ ନିକଟକୁ ନେଇ କହିଲେ "ମା, ତୋର ସ୍ୱାଭାବିକ ସୌନ୍ଦର୍ଯ୍ୟ କୌଣସି ମତେ କମି ନାହିଁ; କୋଟିଏ କନ୍ୟାରେ ତୋହରି ଗୋଟିଏ ମିଳିବା ବିରଳ, ମୋର ଅଶଙ୍କା ହୁଏ ଯେ, ତତେ ଦେଖି ଦସ୍ୟୁକଧି ମୋର କୋକିଳକୁ ଗ୍ରହଣ କରିବେ ନାହିଁ ପରା । କୋକିଳ କିଛି କୁରୂପିଣୀ ନୁହେଁ, କିନ୍ତୁ ତୋହର ତୁଳନାରେ ସେ ରୂପବତୀ ହୋଇ ପାରିବ ନାହିଁ; ତନ-ହୋଷ୍ଟ ସ୍ୱର୍ଣ୍ଣମୋହର କେବଳ ତାହାର ସୌନ୍ଦର୍ଯ୍ୟ; ଯାହାହେଉ, ତତେ ଭଲରୂପେ ବିଭୂଷିତ କରିବା ଆବଶ୍ୟକ; କୋକିଳର ବେଶଭୂଷା ଧାରଣ କରି ସତ୍ୟ ସ୍ୱର୍ଗୀୟ ଅପ୍ସରୀ ବତ୍ ଦଣ୍ଡାୟମାନ ହେଲେ । ପାର୍ଶ୍ୱ-ବର୍ତ୍ତିନୀ ଦାସୀ ସତ୍ୟଙ୍କୁ ଗୁହ୍ମିଁ କହିଲା—"ଅହା ! ମା ବଡ଼ ସୁନ୍ଦର ଦିଶୁଛନ୍ତି; ସୁନ୍ଦର ହୋଇଲେ ଏ ଏଣେ ସୁନ୍ଦର; ମା ବଡଘର ଝିଅ ନୋହିଥିଲେ, ଠିକ୍ ସେହି ପଳାୟିତ ବଣିକ କନ୍ୟା ପରି ଦିଶନ୍ତେ ବୋଲି କୁହାଯାନ୍ତା । ମୁଁ ସେ ପିଲାଟିକୁ ଦେଖିଛି; ସେ କିଛି ଦୋଷ କରି ନଥିବ; ବୃଥା ତାକୁ ଦଣ୍ଡ ଦେଲେ; ତା କଥା ମନେ ପଡ଼ିଗଲେ ମୋତେ ବିକଳ ଲାଗୁଛି; କେବେ କହିଥିଲେ କେତେ ଦିନ ଚଳେ ଯେ

ଏତିକି ଅଡ଼େଇଥିଲ" । ଏତକ କହୁଛନ୍ତି, କଙ୍କଣା ଅନ୍ତରର ହୋଇ କହିଲା, "ହେଇ, ସେତକ ହେଉ, କନ୍ଦର୍ପଙ୍କ କଥା ଶୁଣିବାକୁ ଅନ୍ତ ଅଛିନାହିଁ—ନାହିଁ କୋକିଳର ଛୁଇ ମୁହଁଟି କେଉଁଠେ ଅଛୁ ?" ହୀ ଦାସୀ ଆଉ କଣ୍ଠେ ଦ କଥା କହିଲୁ, "ଦେହଟି ମୁହଁ, ମୁଁ ତାଙ୍କୁ ଲଗାଇ ଦେବି; ତାଙ୍କୁ ଦେଖି କରିବାକୁ ମତେ ଶୁଭା ହଉଛି" ।

ଚଞ୍ଚଳା ପତ୍ୟଙ୍କୁ ନିଜର ଚୁଚୁକୁ ନେଇଯାଇ କହିଲା "ଦେଖ ସଖ୍ୟ, ତୋହର ରୂପ ଦେଖି ଏଠା କେତେକ ଅନୁମାନାଦ୍ଦେ ହେଲେଣି-ଭୁ ଅତ୍ୟନ୍ତ ସାବଧାନ ହେବା ଅଛନ୍ତି" । କିଛିକ୍ଷଣ ପରେ ଚଞ୍ଚଳା ସଖ୍ୟଙ୍କୁ ସମତିବ୍ୟାହାର ହେଉଛନ୍ତି କରିଲ ହିଂହିଙ୍କ ଦର୍ବାର ମଣ୍ଡପକୁ ନେଇଗଲ ।

—०○०—

## ନବମ ଅଧ୍ୟାୟ

ହିଂହିଙ୍କ ନବରତ୍ନ ଆଜି ବସନ୍ତ ପକ୍ଷ ପୁଷ୍ପରେ ସଜ୍ଜିତ । ଦ୍ୱାର ଦେଶରେ ଶୁଭ ସୂଚକ ନାନା ରଙ୍ଗର ତୋରଣାଦି ଲମ୍ବମାନ । ଦର୍ବାର ଗୃହଟି ପୁଷ୍ପଚ୍ଛବି, ଚନ୍ଦ୍ରାତପ ଓ ଜରିତ ଚଉକି ଚଦରଙ୍କ ଇତ୍ୟାଦିରେ ପରିପୂର୍ଣ୍ଣ । ଆମନ୍ତ୍ରିତ ବନ୍ଧୁବର୍ଗ ମନୋହର ବେଶଭୂଷା ଧାରଣ ପୂର୍ବକ ଦର୍ବାର ମଣ୍ଡପରେ ସମବେତ ହୋଇ ରାଜାଙ୍କ ଆଗମନ ଅପେକ୍ଷାରେ ଉପବେଶନ କରିଅଛନ୍ତି । ସତ୍ୟବତୀ ବେଶ ଜନାନ୍ତିକ ମଣ୍ଡପରେ ପ୍ରବେଶ କଲେ କିନ୍ତୁ କାହାକୁ ମୁଖ ଟେକି କହିପାରିଲେ ନାହିଁ । ବସନ୍ତ ରଙ୍ଗ ହର୍ଷର ସ୍ୱାଭାବିକ ସୌନ୍ଦର୍ଯ୍ୟ ଓ ଲଜ୍ଜା ପ୍ରଦର୍ଶନ କରି ଧୀରେ ଧୀରେ

ତାହାଙ୍କୁ ପ୍ରଶଂସା କରିବାକୁ ଲାଗିଲେ । କିଏ କହିଲେ "ଅହା ! କି ସୌନ୍ଦର୍ଯ୍ୟ ନିଧି ।" କିଏ କହିଲେ "ସୌନ୍ଦର୍ଯ୍ୟ ଓ ସମ୍ପତ୍ତି ଏକସ୍ଥାନରେ ରହିବା ବିରଳ ।" ଅନ୍ୟ ଜଣେ କହିଲେ "ଦୟାନିଧି ଭାଗ୍ୟବାନ୍ । ଅହା ! କି ସୁନ୍ଦର କୁଞ୍ଚିତ କେଶ । ପାପ, ଜ୍ୱରପୀଡ଼ା ଯୋଗୁଁ କେଶ ଗୁଡ଼ିକ କଟାଇ ଥିଲପରି ଶୁଣିଥିଲି । ଦୂର କଥାଁ ଲା ପାରୁ ନାହିଁ, ହେଲେହେଁ କୃଷ୍ଣସାର ମୃଗ ପୁଚ୍ଛ ଧିକ୍କାର କରୁଅଛି ।" ଅନ୍ୟ ଜଣେ ପ୍ରକାଶ କଲେ, "ତେଣେ ଦୟାନିଧି ହିନ୍ଦୁଙ୍କୁ ଗୃହିଁ; ଆଜି ତାଙ୍କ ମୁଖାରବିନ୍ଦ କିପରି ପ୍ରଫୁଲ୍ଲିତ ଦିଶୁଅଛି । ଏହି କନ୍ୟା ଯୋଗେ ତିନି କୋଟି ସ୍ୱର୍ଣ୍ଣମୁଦ୍ରା ପ୍ରାପ୍ତ ହେବା ଆଶାରେ ସେ ତାଙ୍କ ପାଣିଗ୍ରହଣ ସ୍ଥିର କରିନାହାନ୍ତି । ତାଙ୍କ ଭଙ୍ଗିରୁ ଜଣାଯାଏ ଯେ, ଏହି ସ୍ୱର୍ଗୀୟ ପ୍ରତିମାର ପାଦୁକା ପୂଜା କରିବାକୁ ସୁଦ୍ଧା ପ୍ରସ୍ତୁତ ଅଛନ୍ତି ।" ଏମନ୍ତ ସମୟରେ ହିନ୍ଦୁ କନ୍ୟାଙ୍କୁ ବନ୍ଧୁଙ୍କ ସହିତ ପରିଚୟ କରାଇଲେ । ତତ୍ପରେ ସେମାନଙ୍କୁ ଭୋଜନ ଦେଲେ । ପ୍ରାୟ ନିମନ୍ତ୍ରିତ ବନ୍ଧୁବାନ୍ଧବ ପିଷ୍ଟକାଦି ଭୋଜନରେ ତୃପ୍ତ ହେଲେ । କିନ୍ତୁ ସତ୍ୟବତୀର ମନ ସୁଖ ନାହିଁ । ମନେ ମନେ ଭାବୁଥିଲେ ଯେ, ଯଦି କେହି ତାଙ୍କୁ ଚିହ୍ନିପାରେ, ତେବେ ତାଙ୍କର ସର୍ବନାଶ ଘଟିବ । ଭୋଜନ ସମୟରେ ଜଣେ ବନ୍ଧୁ ପ୍ରଶ୍ନ କଲେ, "ଦୟାନିଧି ବା ବଣିକ କନ୍ୟା ଧରି ପଡ଼ିଲାକି ?" ଏହି ପ୍ରଶ୍ନ ଶୁଣି ସତ୍ୟବତୀ ମର୍ମାହତ ହେଲେ; କିନ୍ତୁ ତତ୍ରାଗତ ବନ୍ଧୁଙ୍କ ମଧ୍ୟରେ ତାଙ୍କ ପରିଚିତ ଲୋକ କେହି ନଥିବାରୁ କିଛି ଆଶ୍ୱସ୍ତ ହୋଇ, ସେହି ରଜନୀ ବିତାଇ ପାରିଲେ ବିଶେଷ ମଙ୍ଗଳ ହେବ ବୋଲି ସ୍ଥିର କରି ମନେ ମନେ ପରମେଶ୍ୱରଙ୍କୁ ପ୍ରାର୍ଥନା କଲେ, "ହେ ପ୍ରଭୁ ! ରକ୍ଷାକର, ଯଦିଚ ମୋହର ପୁନଃ ବନ୍ଧନ ଅନିବାର୍ଯ୍ୟ, ତାହା ଏହି ଗୃହରେ ନହେଉ । ତଦ୍ଦ୍ୱାରା ଏହି ଅମାୟିକ ଦୟାନିଧିଙ୍କ ନାମ କଳଙ୍କିତ ହେବ । ସେ ଭଦ୍ର ମଣ୍ଡଳରେ ନତମସ୍ତକ ହେବେ । ମୋତେ ଯାହା ହେବାର ହେଉ, କିନ୍ତୁ ହେ ପ୍ରଭୁ !

ସିଂହଙ୍କୁ ଏହି ଦୁର୍ନାମରୁ ବଞ୍ଚାଅ ।" ଏମନ୍ତ ସମୟରେ ସୁରେଖା ଚଉକରୁ ଉଠିଲେ, ସତ୍ୟ ସୁଦ୍ଧା ଗାତ୍ରୋତ୍ଥାନ କରି ତାଙ୍କ ନିକଟବର୍ତ୍ତିନୀ ହେଲେ । ସିହ୍ନ ତାଙ୍କ ଅଙ୍ଗକୁ ଅଗ୍ରସର ହୋଇ ପ୍ରଶ୍ନ କଲେ, "ପ୍ରିୟେ ! କୁନ୍ତଳେ ! ତୁମ୍ଭେ କୁଆଡ଼େ ?" ଏହି ଅମୃତମୟ ସମ୍ବୋଧନ ଶୁଣି ନଶୁଣିଲା ପରି ସତ୍ୟ ପ୍ରସ୍ଥାନୋନ୍ମୁଖୀ ହେଲେ । କିଛି ଦୂର ଯିବା ପରେ ବିଶାଖା ଆସି କହିଲେ, "ଟେଲିଫୋନ୍ ତାର ଯୋଡ଼ିବା ମତେ କିଏ ଡ଼ାକୁଅଛି, ମୋହ ସହିତ ତାର ଯନ୍ତ୍ର ଥିବା ବଖରାକୁ ଆସ ।" ଦୁଇଜଣ ଯନ୍ତ୍ର ନିକଟକୁ ଗଲେ । ବିଶାଖା ଶବ୍ଦ ବାହକଟି କାନରେ ଦେଇ କିଛି କାଳ କଥା ହେଲା । ହଠାତ୍ ଚିତ୍କାର ଶବ୍ଦ କରିବାକୁ ଲାଗିଲା । ସତ୍ୟ ଝମ୍ପ ଦେଇ ତାଙ୍କୁ କୋଳାଗତ କରି, "କଅଣ ହେଲା କହ" ବୋଲି ପ୍ରଶ୍ନ କଲେ । ମୁହୂର୍ତ୍ତେ ପର୍ଯ୍ୟନ୍ତ ବିଶାଖା ଉତ୍ତର ଦାନ କରିବାକୁ ଅକ୍ଷମ ହେଲେ, ପରେ ଯନ୍ତ୍ରଟିକୁ ପକାଇ ଗୋଟିଏ ଚଉକି ପାଖକୁ ଯୋଚଡ଼ି ଯାଇ ନିସ୍ତବ୍ଧ ହୋଇ ତହିଁ ଉପରେ ପଡ଼ି ରହିଲେ । ସତ୍ୟବତୀ ବ୍ୟସ୍ତସମସ୍ତ ହୋଇ "ମା, କଅଣ ହେଲା" ବୋଲି ପୁନଃ ପ୍ରଶ୍ନ କଲେ । ବିଶାଖା ଉତ୍ତର ଦେଲେ, "ଅଲୋ ମା, ମୋର ଝିଅର ଭୁଣ୍ଡି ବୁଡ଼ିଲା ।" ସତ୍ୟବତୀ ସନ୍ତୋଷରେ କହିଲେ, "କୋକିଳର ଭୁଣ୍ଡ ଶୁଣିଲ, ବର୍ତ୍ତମାନ ସେ କେଉଁଠାରେ କିପରି ଅଛନ୍ତି ଜାଣିପାରିଲ ତ ? ଈଶ୍ୱର ବଡ଼ଲୋକ, ଏଣିକି ସବୁ ଭଲରେ ଚଳିବ । ତୁମର ଅକଥନୀୟ ହୃଦବେଦନା ଶାନ୍ତ ହେବ । ଏଥିଲାଗି ମୁଁ ଈଶ୍ୱରଙ୍କୁ ଶତ ଧନ୍ୟବାଦ ଦେଉଅଛି ।"

ବିଶାଖା ମୁଣ୍ଡ ହଲାଇ କ୍ଷଣ ସ୍ୱରରେ ଜଣା କଲେ, "ନାହିଁ, ନାହିଁ, ସେପରି କିଛି ଘଟିନାହିଁ, କୋକିଳ ମତେ ତାର ପୋଷେ ଭାତ ନାହିଁ କିମ୍ବା ତାହା ବିଷୟ କିଛି ଜାଣିପାରୁନାହିଁ । ଅନ୍ୟ ମୋହର ଜଣେ

ସ୍ୱର୍ଣ୍ଣ ମାତ୍ରାକରେ ଦନ୍ତୁହ ଅଛି, ଆଜି କୋକିଳର ଗଣ୍ଠିବନ୍ଧା ଦିନ ବୋଲି ସେ ଜାଣେ । ଅତଏବ କୋକିଳକୁ ଶୁଭାଶିର୍ବାଦ ଦେବାକୁ ମନେ ତାର ଉତ୍ସାହ ଜାଗି ଥିଲା, ତାହା ସହିତ କଥୋପକଥନ କରୁ କରୁ ହଠାତ୍ ତାର ଶେଷ କୋକିଳ କାହା ସହିତ କଥା ହେବାର ଶୁଣିଲା । ଭଲକରି ସେ ମୁଁ ତାର କଣ୍ଠଧ୍ୱନି ବାରିପାରିଲି ' ସେ କାହାକୁ ବା କହୁଅଛି, "ମୋ ପ୍ରତି କୃପାକର" ହା ! ସେହି ହତଭାଗ୍ୟକୁ ଏହି ଜଗ କହିଲା ପରି ଅନୁଭବ ହୁଏ । ପ୍ରିୟ ସତ୍ୟ ! ଏ ଟୋକିଟି କିଏ ଏବଂ ଏହି କାତରୋକ୍ତିର ଅର୍ଥ କଅଣ କହି ପାରିବୁ ?" ସତ୍ୟ ପଚାରିଲେ, "ଅଛି, ଏହି କାତରୋକ୍ତି ତଳା ଆଜିକଳି ଶୁଣିନ ହିଁ ?" ଶଶାଙ୍କ ଉତ୍ତର ଦେଲେ, ହଁ ମା, "ତୁମେ କହିବ ? ଚୁପ ରହିବ ?" କହିଲା । ସତ୍ୟ କିଛି ସମାଧାନ ଦେଇପାରିଲେ ନାହିଁ । ଶଶାଙ୍କ ଉନ୍ମାଦଗ୍ରସ୍ତ ହେଲାପରି ନାନା ମତେ ପ୍ରଳାପ କଲେ, କିନ୍ତୁ ସତ୍ୟବତୀଙ୍କ ସତର୍କବାଣୀ ଶୁଣି ଚେତା ହେଲେ । "ମତେ ଶୀତ ଲଗୁଅଛି, ଟିକିଏ ଚାଲିବୁ ଯାଉଛି । ସିଂହ ପଞ୍ଜୁରିରେ ଏପରି ଜଣେ ଦେବ" କହି ପ୍ରଦ୍ୟୋତନାଭିମୁଖୀ ହେଲେ । ସତ୍ୟ ତାଙ୍କ ସହିତ ଯିବାକୁ ବାହାରିଲେ । ଶଶାଙ୍କ ତାଙ୍କୁ ମନା କରି କହିଲେ, "ତୁ ଯିବାକୁ ଦେବନାହିଁ । ତୋହ ଲାଗି ଏହ ସମ୍ଭାର ଲାଗି ଅଛି । ସିଂହଙ୍କ କଥା କେତେଣେ ଥାଉ ବନ୍ଧୁବର୍ଗ କଅଣ କହିବେ, ମା ହିଁ ହିଁ କୁ ହଠାଏ ବଡୁଙ୍କ ଲାଗିଲା ଯେ, ବନ୍ଧୁଗଣଙ୍କୁ ଅସହ୍ୟାର କରି ପଳାଇଲି ବୋଲି ନିନ୍ଦା କରିବେ । ନାହିଁ, ନାହିଁ ଆନନ୍ଦ ଭୁଲି ପାରିବ ନାହିଁ ନାହିଁ ।" ସତ୍ୟ ପ୍ରଶ୍ନ କଲେ, "ମା ପ୍ରମୋଦ କଏ ?" ଶଶାଙ୍କ କହିଲେ, "ଦମ୍ପାନନ୍ଦ ପ୍ରିୟ ମାତ୍ର ପ୍ରମୋଦ ।"

---

# ଦଶମ ଅଧ୍ୟାୟ

ତତ୍କ୍ଷଣ ଦୃଷ୍ଟାନ୍ତକ ଦସ୍ୟୁନାଥ ସିଂହ ସେହି ମନ୍ଦିରରେ ପ୍ରବେଶ କଲେ। ତାଙ୍କୁ ଦେଖି ସତ୍ୟ ଲୁଚାଇବାକୁ ଯତ୍ନ କଲେ।

ଦ—କାହାର ଯାଉଛ କୁଆଡେ?

ସ—ଦର୍ଶିର ଘରକୁ, ଶୀଘ୍ର ନଗଲେ ବନ୍ଧୁବର୍ଗ କଅଣ କହିବେ? ଅନେକ ହିତୈଷୀଙ୍କ ଅନୁପସ୍ଥିତ ବାଛିବେ ନାହିଁକି?

ଦ—ଦେଖିଲୁ, ଅନ୍ୟର ଗଳ୍ପ କଅଣ? ବର୍ତ୍ତମାନ କ୍ଷଣେ ଏକାନ୍ତ ହେବା ଅତ୍ୟନ୍ତ ଅବଶ୍ୟକ। ଏ ଜଗତରେ ତୁମେ ମୋର ଏବଂ ମୁଁ ତୁମ୍ଭର ସର୍ବସ୍ୱ। ତୁମ୍ଭ ମନ ମୁଁ ଜାଣିନାହିଁ, ଅତଏବ ଯଥାର୍ଥ କହିବାକୁ ଗଲେ, ତୁମେ ମୋର ସର୍ବସ୍ୱ। ଅଳ୍ପଦିନେ ଏହି ଯଜ୍ଞବାଟୀ ଆମ୍ଭର ଚିର ପ୍ରେମ-କୁଟୀର ହେବ। ପ୍ରସ୍ଥାନୋନ୍ମୁଖୀ ହୁଅ କାହିଁକି? ଆଜକୁ ଛଅବର୍ଷ ହେଲା ତୁମ୍ଭଙ୍କୁ କହିବା ଲାଗି ପ୍ରତ୍ୟେକ ପର ସୁହିଁ ରହିଥିଲି କିନ୍ତୁ "କୁନ୍ତଳା" ବୋଲି ମନେ ମନେ ଭାବିବା ବିନା ତୁମ୍ଭ ନାମ ଧାମ ଜାଣି ନଥିବା ଯୋଗୁ କହି ପାରୁନଥିଲି, ସେହି କଥା ଶୁଣିବା ପାଇଁ କ୍ଷଣେ ମାତ୍ର ରହ। ତୁମ୍ଭେ ବାହାରି ଯିବାକୁ ଯତ୍ନ କରିବା ବୃଥା ପ୍ରୟାସମାତ୍ର। ମୁଁ ତୁମ୍ଭଙ୍କୁ ଛାଡ଼ି ଦେବନାହିଁ।" ଏହିରୂପ କହି ସତ୍ୟବତୀଙ୍କୁ ବଳପୂର୍ବକ ଆଲିଙ୍ଗନ କରି ତାହାଙ୍କ ମସ୍ତକ ଆଘ୍ରାଣ କରି କହିଲେ, "ପ୍ରିୟେ, କୁନ୍ତଳା! ଏ ଜୀବନରେ ପୁନର୍ବାର ତୁମ୍ଭଙ୍କୁ ଦେଖିବି ବୋଲି ଆଶା ନଥିଲା। ମୋହର ପିତାଙ୍କ ଆଦେଶ କ୍ରମେ ଯେଉଁ ମାଳବାର କୋଟିପତିଙ୍କ କନ୍ୟା ମୋହର ପତ୍ନୀ ହେବାର ସ୍ଥିର ହୋଇଅଛି ଓ ଯାହାଙ୍କ ସାକ୍ଷାତ କରିବାକୁ ମୁଁ ମନେ ମନେ ଘୃଣା କରୁଥିଲି, ତୁମ୍ଭେ ସେହି କନ୍ୟା ଅଟ ବୋଲି ନିଶ୍ଚିତ ବୁଝି ଭରସା ପାଉନଥିଲି। ମୁଁ ଶଙ୍କା କରୁଥିଲି ଯେ,

ଆଜି ଦିନର ଗଣ୍ଠିବନ୍ଧା ଉତ୍ସବ ମୋର ଦୁଃସ୍ୱପ୍ନ ଜୀବନର ପ୍ରଥମ ଦିବସ ବୋଲି ଘୋଷିତ କରବ । କିନ୍ତୁ ପରମେଶ୍ୱରଙ୍କ କି ବିଚିତ୍ର ଲୀଳା, ସେ ଆଜି ତୁମ୍ଭକୁ ଦେବତାର ସ୍ୱର୍ଗସ୍ଥ ପୀଠରେ ଦେଇଅଛନ୍ତି । ପ୍ରିୟେ ! ତୁମ୍ଭେ ଯେଉଁ ଏତାଦୃଶ ଦେବାନନ୍ଦ ପ୍ରାପ୍ତି ହେବା ପାଇଁ କି ତପସ୍ୟା କରିଥିଲ, ଜାଣିନାହିଁ ଏବଂ ତୁମ୍ଭର ଉପଯୁକ୍ତ ପାତ୍ର ହେବା ନିମନ୍ତେ କଅଣ କରିପାରିବ, ବୁଝି ହେଉନାହିଁ ।

ସ—ହେ ଅଭିଳାଷଦୁର୍ଲ୍ଲଭ ! ମୁ—ମୁ—

ଦୁଃଖ ଉଚ୍ଛ୍ୱାସ ହେତୁ ଚନ୍ଦ୍ରଭାଗା ବାକ୍ୟ ପୂରଣ କରି-ପାରିଲେ ନାହିଁ ।

ପ—ମତେ ଅପରାଧିନୀ କାହିଁକି ସମ୍ବୋଧନ କରୁ-ଅଛ ? ମୁଁ ତୁମ୍ଭର ପ୍ରମୋଦ, ପ୍ରମୋଦ ! ମୁଁ ତୁମ୍ଭକୁ ପ୍ରେମ କରେ ବୋଲି କହ, ଏକଥା ତୁମ୍ଭେ କେବେ କହିନାହିଁ କିନ୍ତୁ ତୁମ୍ଭ ପ୍ରଶାନ୍ତ ନୟନ ଭଙ୍ଗୀରୁ ମୁଁ ତାହା ବୁଝିଅଛି । ଆଉ କହେ, ଯେଉଁଦିନ ଚନ୍ଦ୍ର ଆମ୍ର ବୃକ୍ଷର ପଂକ୍ତିତ ଛାୟାରେ ସନ୍ଧ୍ୟା ସମୟରେ ମୁଁ ତୁମ୍ଭର ସାକ୍ଷାତ ପାଇଥିଲି, ସେହିଦିନ ଅବଧି ବୁଝିଅଛି । ଏବେ ମୋ କର୍ଣ୍ଣରେ ପଶିଲେ କହ । ତୁମ୍ଭ ଅମୃତମୟ ବଚନ ଶୁଣିବାକୁ ଆତୁର ହେଉଅଛି । ମୋର ହାତକୁ ହାତରେ ମୁଣ୍ଡ ଥୋଇ ପ୍ରମୋଦ, ମୁଁ ତୁମ୍ଭକୁ ପ୍ରେମ କରେ ବୋଲି କହିଦିଅ, ତେବେ ଶରୀର ଛାଡ଼ି ଯିବାର ଆଶଙ୍କା କରେନାହିଁ । ଦେବୀଙ୍କ ମନ୍ଦିରକୁ ଯିବା ପୂର୍ବରୁ ମୁଁ ଜୀବନ ଛାଡ଼ି ଦେବି ।”

ଚନ୍ଦ୍ରଭାଗା ଉତ୍ତର କରିଲେ ନାହିଁ, କରି ପାରିଲେ ନାହିଁ । ତାହା କଣ୍ଠନାଳୀରେ କଣ୍ଠ-ରୋଧ ହେଲା । ଆନନ୍ଦ, ଦୁଃଖ, ଓ ଲଜ୍ଜା ତାଙ୍କ

ହିଁ ରାଜ୍ୟର ଅଧିକାରୀ ନଥିଲା । ସିନ୍ଧୁଙ୍କ ପ୍ରେମରେ ଅନ୍ଧ, ସେ ତାଙ୍କର ମୋହ ଛାଡ଼ି ନପାରନ୍ତି କେବଳ ଦୁଃଖ ଏବଂ ଛଦ୍ମ ବେଶରେ ତାଙ୍କୁ ପ୍ରବଞ୍ଚନା କରୁଥିବା ଲାଗି ଲଜ୍ଜା ଜାତ ହେଉଥିଲା । ସେ ମନେ ମନେ ଭାବିଲେ ଯଦି ସମ୍ରାଟ୍ ରାଜ ବଂଶରୁ ନଜାଇ ସାମାନ୍ୟ ବ୍ୟକ୍ତି ହୋଇଥାନ୍ତେ ପ୍ରକୃତ କଥା କହି ଦେଇ କ୍ଷମା ଭିକ୍ଷା କରନ୍ତେ । ନିର୍ଦ୍ଦୋଷରେ କାରାଦଣ୍ଡ ପାଇଲେ ମୋତେ କିଛି ତାଙ୍କ ସ୍ତ୍ରୀ ହୋଇ ପାରନ୍ତେ ମାତ୍ର ବର୍ତ୍ତମାନ ଅବସ୍ଥାରେ ସେହି ତାଙ୍କ ଲାଗି ଛଳ ବଶ୍ୟାତ ରାଜବଂଶକୁ କେବେହେଁ କଳଙ୍କିତ କରିବେ ନାହିଁ । ଏହି ମତେ ଭାବୁ ଭାବୁ ଦୁଃଖାବେଗ ବୃଦ୍ଧି ହେଲା, ସିନ୍ଧୁଙ୍କ ମୁଖକୁ ଚାହିଁ ପାରିଲେନାହିଁ, ଅଧୋମୁଖ ହୋଇ କହିଲେ, "ହେ ରାଜପୁରୁଷ, ମତେ ଛାଡ଼ି ଦିଅ ମୁଁ ଯାଏ ।"

ଦ—ତେବେ, "ପ୍ରମୋଦ, ମୁଁ ତୁମ୍ଭକୁ ପ୍ରେମ କରେ" ବୋଲି କହିବ ନାହିଁ । ତୁମ୍ଭ ପ୍ରେମମୟ ମୁଖାରବିନ୍ଦ ତାହା କହୁଅଛି । ତୁମ୍ଭେ ମୌନାବଲମ୍ବନ କରିଅଛ କି ପାଇଁ ?

ସ—ନାହିଁ, ମତେ ଛାଡ଼ିଦିଅ । ଏବେ ଧରି ଆଲିଙ୍ଗନ କରିବାକୁ ତୁମ୍ଭର ଅଧିକାର ନାହିଁ ।

ଦ—କାହିଁକି ନାହିଁ ? ଅଳ୍ପକାଳ ମଧ୍ୟରେ ତୁମ୍ଭେ ମୋର ସହଧର୍ମିଣୀ ହେବ । ତୁମ୍ଭକୁ ଆଲିଙ୍ଗନ କରିବା ଅଧିକାର ମୋର ଛଡ଼ା ଅନ୍ୟ କୌଣସି ପୁରୁଷର ନାହିଁ ।

ଏମନ୍ତ କହି ପ୍ରେମ୍ୟବତୀକୁ ଗାଢ଼ାଲିଙ୍ଗନ କରି ଚୁମ୍ବନ ପ୍ରଦାନ କଲେ । ସତ୍ୟ ସିନ୍ଧୁ ପାରିଲେନାହିଁ, ଚୁମ୍ବନ ପ୍ରତିଦାନର ଚେଷ୍ଟା କଲେ । କିନ୍ତୁ ଅନ୍ତରାତ୍ମା ମାନିଲା ନାହିଁ । ପରିଶେଷରେ ଅଗତ୍ୟା କଣ୍ଠ-

ଦେଲେ, "ପ୍ରିୟେ, ପ୍ରମୋଦ ! ମୁଁ ତୁମକୁ ପ୍ରେମ କରେ । ଯେଉଁଦିନ ଏଡ଼ିକ ପାର୍ଶ୍ୱରେ ସନ୍ଧ୍ୟାରେ ଗାଡ଼ିର ଯାତ୍ରୀଙ୍କୁ ସାହାଯ୍ୟ କରୁଥିଲି ଅଦୃଷ୍ଟ ଯାତ୍ରିକ ଭେଟ ହୋଇଥିଲ, ସେହିଦିନ ଅବଧି ମୁଁ ଏହି ପ୍ରେମ ପୋଷଣ କରୁଅଛି । ମୋହର ବିନୀତ ଅନୁରୋଧ ଯେ ଏହି କଥା ଯେଉଁଦିନ ଯେତେବେଳେ ଆପଣ ଶୁଣିବେ ଜମା ଲୋକେ କହିବେ ଯେ ମୁଁ-ମୁଁ— କୃପା କରି ମତେ କ୍ଷମା କରିବେ ।"

ସତ୍ୟ "ମୁଁ ବୋକନ ନୁହେଁ । ମୁଁ ଡାକୁଙ୍କର ପରିତ୍ୟକ୍ତା ଲାଞ୍ଛିତା ବଣିକ କନ୍ୟା" ଏବେ କହି ଦେବାକୁ ସ୍ଥିର କରିଥିଲେ କିନ୍ତୁ ବଚନ ସ୍ଫୁରିଲା ନାହିଁ । ଦୟାନିଧି ତାଙ୍କୁ ଅଧିକ କହିବାକୁ ଦେଲେ ନାହିଁ, ତାଙ୍କ ତୁଣ୍ଡରେ ହସ୍ତ ଦେଇ କହିଲେ, "ପ୍ରାଣ ପ୍ରିୟେ, ଆଉ କିଛି କୁହ ନାହିଁ । ଆମ୍ଭ ମଧ୍ୟରେ ଅଧିକ ବଚନ ବାହୁଲ୍ୟ ଅନାବଶ୍ୟକ । ତୁମ୍ଭେ ମତେ ପ୍ରେମ କର ବୋଲି କହୁଅଛ, ଆଉ କିଛି ଲୋଡ଼ା ନାହିଁ । ଏବେ ମୋହର ଦୁଃଖମୟ ଜୀବନରେ ପ୍ରକୃତ ଭାଗ୍ୟ ଉଦୟ ହେଲା । ଯଦି କେହି ଦୁର୍ଦ୍ଧ-ମୁଦ୍ରା ଆମ୍ଭ ପ୍ରେମର ପ୍ରତିବନ୍ଧକ ବୋଲି ଭାବୁଥିଲି, ତାହା ଏବେ ସବୁଠି କୌଣସି ମତେ ଅପ୍ରାପ୍ୟ ହୋଇପଡ଼େ, ତେବେ ମୁଁ ଦୁଃଖିତ ନୋହି ବିଶେଷ ଆନନ୍ଦିତ ହେବି ।"

ସ—ଆପଣ ଯଥାର୍ଥ କହୁଅଛନ୍ତି ।

ଦ—ଯଥାର୍ଥ କହି ନ ପାରି ପରମେଶ୍ୱର ଜାଣନ୍ତି ! ହଁ, ତୁମ୍ଭ ଅମାୟିକ ମୁଖକୁ ଚାହିଁ ଅନୃତ କହିବା କାପୁରୁଷର କାର୍ଯ୍ୟ ।

ସତ୍ୟର ମନରେ ପୂର୍ଣ୍ଣ ଆଶା ଜାଗରିତ ହେଲା । କିନ୍ତୁ ନିଜର ଦୁରବସ୍ଥା ଓ ଅଦ୍ଭୁତ କନ୍ୟା ବୋକନର କଥା ଚିନ୍ତା କରି ସିଦ୍ଧାନ୍ତ ଦୟାଙ୍କ କୌଶଳରେ ଏପରି ସେହି ସଙ୍କଟାପନ୍ନ ଅବସ୍ଥା ହେଲା

ଛଦରକୁ ପ୍ରସ୍ଥାନ କଲେ ଏବଂ ତହିଁର ଏକ ପାର୍ଶ୍ୱରେ ବୃକ୍ଷ ବଲ୍ଲୀଲତା ଓ କ୍ରାଗୁଳା ହୋଇ କିଛିକାଳ ଦଣ୍ଡାୟମାନ ହେଲେ । ସେହି ସ୍ଥାନରେ ଦୂରରୁ ଜଣେ ବୃହତ୍‌କାୟ କୃଷ୍ଣବର୍ଣ୍ଣ ପୁରୁଷକୁ ଦର୍ଶନ କରି ତାଙ୍କ ହୃଦୟର କମ୍ପମାନ ହେଲା । ସେ ଅନ୍ୟ କେହି ନୁହେ, କୁନ୍ତଳାଙ୍କ ଭ୍ରାତା ଦୁଷ୍କର୍ମରତ ବଦ୍ରୁପ । ଇତ୍ୟବସରେ ପ୍ରାଣବାୟୁ ଉଡ଼ିଗଲା, ଶରୀର କାଷ୍ଠବତ୍ ହୋଇଗଲା, ପାଦ ଚଳିଲା ନାହିଁ ଓ ପାଟି ଫିଟିଲା ନାହିଁ । ବଦ୍ରୁପ ତାଙ୍କୁ ଅତି ଧୀରରେ କହିଲା, "କଲୋମା ଚଇଲ ଚଢ଼େଇ, ତୁ କେଉଁଠାରେ ଅଛୁ ? ତୁ ତ ହରିବଚନ ଲୀଳା ଲଗାଇଛୁ; ଏହି ବେଶଭୂଷା କାହୁଁ ପାଇଲୁ ? ଯାହାହେଉ ଏ ସବୁ କିଛି ଫଳପ୍ରଦ ହେବ ନାହିଁ । ଦେଖି, ପୋଲିସ ଦଳ ତତେ ଖୋଜି ଖୋଜି ଏହି ଉଆସ ଦ୍ୱାରକୁ ଆସିଲେଣି, ଏହିକ୍ଷଣି ତତେ ନେଇଯିବେ; ମୋ ବିନା କେହି ତତେ ରକ୍ଷା କରି ପାରିବେ ନାହିଁ; ମୁଁ ବଞ୍ଚାଇ ନେଲେ ମୋର ପ୍ରେୟସୀ ହେବୁ ତ ? ସେଥିପାଇଁ ମୁଁ ତତେ ଅନେକଥର ପ୍ରାର୍ଥନା କରିଥିଲି, କିନ୍ତୁ ମୋତେ ଅବଜ୍ଞା କରି କଷ୍ଟ ଭୋଗ କଲୁ । ପୁନର୍ବାର କାରାଗୃହକୁ ଯିବୁ, କି ମୋର ପ୍ରାଣପ୍ରିୟା ହେବୁ, ଶୀଘ୍ର କହ ।"

କୁ— ତୁମ୍ଭେ କହିବା କଥା ସବୁ ସତ ?

ବ—କିଛି ସନ୍ଦେହ କର ନାହିଁ ।

କୁ—ଅଳ୍ପ ଚିନ୍ତା କରି ଉତ୍ତର କହିବି, କ୍ଷଣେମାତ୍ର ସମୟ ଦିଅ ।

ବ—ବିଚାର କରିବାକୁ ଆଉ ମୁହୂର୍ତ୍ତେ ସୁଦ୍ଧା ସମୟ ନାହିଁ । ମୋର ପ୍ରଣୟର ସଙ୍ଗିନୀ ହେବୁ, ନା ପୁନର୍ବାର ଜେଲକୁ ଯାଇ ଅବଶିଷ୍ଟ ସୁଦୀର୍ଘ କାଳ ଅକଥନୀୟ ଦଣ୍ଡ ଭୋଗ କରି ଏହି ମୋହନୀୟ ଯୌବନନଷ୍ଟ କରିବୁ, ଜାଣିଁ ପାରୁଲେ ବନ୍ଧୁମାନଙ୍କ ଅସ୍ଥିକଙ୍କାଳ ହୋଇ ଫେରିବୁ, ଶୀଘ୍ର ସ୍ଥିର କର ।

---

# ଏକାଦଶ ଅଧ୍ୟାୟ ।

ଦୁଃଖିନୀ ସତ୍ୟ କିଛି କହିପାରିଲେ ନାହିଁ । ତାଙ୍କ ମସ୍ତକ ଘୂର୍ଣ୍ଣାୟମାନ ହୋଇଗଲା, ସବୁଆଡ଼ ଅନ୍ଧାର ଦିଶିଲା । ସିଦ୍ଧଙ୍କ ଜୀବନରେ ଅମୂଲ୍ୟ ରତ୍ନାଦି ଭୂଷଣରେ ଭୂଷିତ ହୋଇ ପଳାଇବା କଦାପି ସୁବିଧ ପୋଲିସ୍‌ଙ୍କ ଦ୍ୱାରା ଧୃତ ହେବେ ନା ଦୁର୍ବୃତ୍ତ ବଦ୍ରୁପର କବଳରେ ହେଉ ଆତ୍ମରକ୍ଷା କରିବେ-କିଛି ସ୍ଥିରକରି ପାରିଲେ ନାହିଁ । ସେ ଭାବିଲେ ବଦ୍ରୁପଙ୍କୁ ଆତ୍ମସମର୍ପଣ କରିବା ଅପେକ୍ଷା ଦୁର୍ନିବାର ଜଳକୁ ଯାଇ ପ୍ରାଣ ତ୍ୟାଗ କରିବା ଶ୍ରେୟସ୍କର । ଦୈବ ଦୁର୍ବଣ କରି ଶେଷରେ ଧୈର୍ଯ୍ୟଧାରଣ ପୂର୍ବକ ବଦ୍ରୁପଙ୍କୁ ପ୍ରଶ୍ନ କଲେ, "ଆଜ୍ଞା, ମୁଁ ଏଠାରେ ଅଛି ବୋଲି ତୁମ୍ଭେ କପରି ଜାଣିଲ ? ତୁମ୍ଭେ ଗୁପ୍ତ ଗହ୍ୱର ମଧ୍ୟରେ ଥିଲାବେଳେ ମୁଁ ଯାଇଥିଲି, ମତେ ସେଠାରେ ଦେଖିଥିଲ କି ?" କୁନ୍ତ ଗହ୍ୱର କଥା ଶୁଣିବା ମାତ୍ରେ ବଦ୍ରୁପର ଚାକ୍ ଛୁଟିଗଲା । ସେ ମନରେ ସଙ୍କୋଚିତ ହେଲା ପରି ଦିଶିଲେ । କିନ୍ତୁ ସତ୍ୟବତୀଙ୍କର ସୌନ୍ଦର୍ଯ୍ୟରେ ମୋହିତ ହୋଇ "ଛି ମୂର୍ଖା, ଏ ସବୁ କଥା କାହିଁକି କହୁଅଛୁ ? ଦେଖି, ମୋଲବୀ ସାହେବଙ୍କୁ ଆସୁଛନ୍ତି, ତାଙ୍କ ପାଦଶବ୍ଦ ଶୁଭୁଅଛି, ଏହିକ୍ଷଣି ତତେ ନେଇଯିବେ । ମୋହ ସହିତ ଆସ, ତୋର ପ୍ରାଣଦାନ କରି ପୁଣି ତତେ ରଖାଇବି ।" ଏମନ୍ତ କହି ତାଙ୍କ ହସ୍ତ ଧରି ଆକର୍ଷଣ କଲା । ସତ୍ୟ ବଳପୂର୍ବକ ହସ୍ତ ଛଡ଼ାଇ ନେଲେ । ଇତି ମଧ୍ୟରେ ପୋଲିସ ଇନ୍‌ସ୍ପେକ୍ଟରଙ୍କ ମହାବୀର ସିଂହଙ୍କ ଲମ୍ବୋଦର ପାଠି ବାବୁ କନଷ୍ଟେବଲ ସହିତ ସେହି ଜଙ୍ଗଲରେ ପ୍ରବେଶକଲେ । ସେମାନଙ୍କ ସହିତ ବିଶାଖା ଓ ଦୟାନିଧି ମିଶ୍ର ଦୁହେଁ ଥିଲେ । ବଦ୍ରୁପ ସେମାନଙ୍କୁ ଦେଖି ଜଙ୍ଗଲପଥ ଦେଇ ଖସି ପଳାଇଲା । ସେତିକିବେଳେ ସାହସ ଓ ଧୈର୍ଯ୍ୟ ବଳରେ ସତ୍ୟବତୀ ଶଙ୍କାତ୍ୟାଗ କରି ବିଶାଖା ଓ ମିଶ୍ରଙ୍କ ପାଖକୁ ଅଗ୍ରସର

ହେଲେ । ଫିର ତାଙ୍କ ହସ୍ତଧରି କହିଲେ, "କୋକିଳ ! ତୁମ୍ଭେ କୋ-
ଣସ ଏତେବେଳ ଯାଏ ଏହି ମେଡ଼ ଉପରେ ଅଛ ?" ବୃଷ୍ଣାଙ୍କ
ପାଖକୁ ଯାଇ କହିଲେ, "ଦର୍ବାରଘରର ଆଭ୍ୟନ୍ତର ବିଶେଷ ଗରମ
ହୋଇଅଛି, ଟିକିଏ ଶୀତଳ ପବନ ପାଇଁ ଆସିଥିବ ।" ସେ ସତ୍ୟ-
ବତୀଙ୍କୁ ସମ୍ବୋଧନ କରି ଅତ୍ୟନ୍ତ ଚୋଲାସମାନଙ୍କୁ ଭଲରୂପେ ଶୁଣିଙ୍କ
ପରି କହିଲେ, "ଅହୋ ମା ! ଆଜି ଭାରି ଗୋଲ୍‌ମାଲ୍ ଲଗିଅଛି, ତୁ
ଜାଣିପାରୁଁ ପରି ? ହେଉଁ ଦେଖ ଏହି ପୋଲିସମାନେ ସେହି ନବାବ୍‌ଜା
ବଣିକ କନ୍ୟା ଜଇଲବୁ ଚୋରି ଅଡ଼ି ଅଛ ଏହି ରାଜପ୍ରାସାଦ ଅଭିମୁ-
ଆସିଥିବାର ସମ୍ବାଦ ପାଇ ତାକୁ ଧରି ନେବାକୁ ଅଟି ଅଛନ୍ତି; ଏହି
ନଗର ସବୁ ଖୋଜିବେ । ମୁ ଏହିକ୍ଷଣି ଏଠାରୁ ଅଳ୍ପ ଅଳ୍ପ ଗବାକ୍ଷ
ଦେଇ ଅନ୍ତର ପଦାକୁ ଚାହିଁଲି, ଏହି ଗୃହ ଆରପାଖ ମୈଦାନଦେଇ
ଜଣେ କେହି ଛଦ୍ମରୂପୀ ସ୍ତ୍ରୀଦୂତ ବେଗରେ ପଳାୟନ କରିବାର
ଦେଖିଲି; କିନ୍ତୁ ମା, ମୁ ଯଥାର୍ଥ କହୁଛି ସେହି ଦୁଃଖିନୀ ଯେ କୌଣସି
ରୂପେ ଚିହ୍ନିଯାଇ । ଏତେ ଦିନ ପର୍ଯ୍ୟନ୍ତ କ କୌଶଳରେ ସେ କନ୍ଦରୁ
ଡହାଇ ବଡବଡ଼ଣ ପୋଲିସଙ୍କୁ ହଟାଇ ଅଛି, ଏହା ଶୁଣିଲେ ତାହା ପ୍ରତି
ସହାନୁଭୂତ ଜନ୍ମୁଅଛି ।"

ଏତାଦୃଶ ସତ୍ସମ୍ବୋଧନ ଶ୍ରବଣ କରି ସର୍ବାଳଙ୍କାର ବିମଣ୍ଡିତା
ସର୍ବାଙ୍ଗ ସୁନ୍ଦରୀ ସତ୍ୟବତୀଙ୍କୁ ପଳାୟିତା କନ୍ୟେନ୍ଦ ବୋଲି କେଉଁ
ପୋଲିସ୍ ଅଫିସର ଅନୁମାନ କରି ପାରିବେ ? ଏହି ବାହ୍ୟାଡମ୍ବର
ଲମ୍ବୋଦର ବାବୁଙ୍କ ଶିର କନ୍ଦୁ ଊର୍ଦ୍ଧ୍ୱ ଦୃଷ୍ଟି ଫେରାଇ ଦେଲା । ତାଙ୍କ
ଚକ୍ଷୁ ଆଉ ସେହି ସ୍ୱର୍ଗୀୟ ପ୍ରତିମା ଉପରେ ପଡ଼ି ପାରିଲା ନାହିଁ ।
ମେଡ଼ରେ ଅନ୍ଧ ସୁନ୍ଦା ଖୋଜାଖୋଜ କରିକ ନୈସର୍ଗ୍ୟ ଜର୍ଜ୍ଜରିତ
ହୃଦୟରେ ବାହାରିବା ବିନେ କରିବାକୁ ଚେଷ୍ଟା କଲେ । ସରକାର

ଜନ୍ମା ବେପରୁଆଙ୍କ ପୁରସ୍କାର ଅଶାନ୍ତିର ଆଉ ତାଙ୍କ ହୃଦୟରେ ମମତା ନାହିଁ ।

ଏତେବେଳେ ଜଣେ ଜମ୍ସେଦଙ୍କୁ ନିଜର ଦୁହିତା ରୂପେ ଚଳାଇ ନେଉଥିବା ଉଷାଖାଙ୍କ ଅସାଧାରଣ ସାହସ ଓ ଚତୁରତାରେ ଉତ୍ତେଜିତ ହୋଇ ସତ୍ୟବତୀଙ୍କ ସ୍ୱାଭାବିକ ମନୋବଳ ପୁନର୍ଜୀବିତ ହେଲା । ସେ କହିଲେ, "ଛି, ଛି, ମୁଁ ଏତେ ଡରିବା ଉଚିତ ନଥିଲା । ବର୍ତ୍ତମାନ ମୁଁ ବୁଝି ପାରିଲି, ଯଦି ସେହି ଦୁଷ୍ଟାତ୍ମା ବଡ଼ ପୋଲିସଙ୍କୁ କହେ, 'ତୁମେ ଜମ୍ସେଦ ସକାଶେ କ୍ଷୀଣ ଜମ୍ମା ମ୍ଳାନ ବସ୍ତ୍ରାବୃତା, ଅନାହାରୀ ଓ ବହୁ ନିମ୍ନ ସ୍ତ୍ରୀଙ୍କ ମଧ୍ୟରେ ଖୋଜିଲେ ପାଇବ ନାହିଁ । ଅଜ ଆମରଣ କ୍ରମେ ନନ୍ଦନ ଓ ବହୁମୂଲ୍ୟ ବିଦେଶୀ ବସ୍ତ୍ର ପରିଧାନ କରି ରତ୍ନ ମାଣିକ୍ୟାଦିରେ ବିଭୂଷିତ ହୋଇ ମହାନନ୍ଦରେ ସଂସାର କରୁଥିବା ହିନ୍ଦୁଙ୍କ କୁଳବଧୂଙ୍କ ମଧ୍ୟରେ ଖୋଜ, ପାଇବ', ତେବେ ମୋହର ସର୍ବନାଶ । ମାତ୍ର ସେ ତାହା କଳ୍ପନା କରି ପାରିବ ନାହିଁ । 'ପୋଲିସ ମତେ ଧରିବେ ବୋଲି' ମୁଁ ଯେଉଁ ରୂପେ ଡରୁଥିଲି, ସେ ମତ ହେତୁ ମୋର ଡର ପଳାଇ ଯାଇଅଛି । ମତେ ଧରିବା ଦେବର ଈର୍ଷା ଜନ୍ମିଥିଲେ ପୋଲିସ ଲୋକେ ମୋର ଘରେ ଅତିଥି ହେଲେ ସେ ତାହା କରିପାରି ଥାନ୍ତା । କି ଅନନ୍ୟମେନ୍ୟ କାରଣରୁ ତାହା କରିନାହିଁ ବା କରିବାର ସମ୍ଭାବନା ନାହିଁ ।" ଏହିରୂପେ ଭାବ ବିହ୍ୱଳ ବଚନରେ କହିଲେ, "ହଁ, ମା, ମୁଁ ବୁଝିଲା ସେହି ଭୂଃଖିନୀ କନ୍ୟାଙ୍କ ପ୍ରତି ବିଶେଷ ସ୍ନେହ ।" କହୁ କହୁ ହଠାତ୍ ଶରୀର ଥରିଗଲା । ଦୟାନିଧି ହିନ୍ଦୁ ଏହି କର୍ମ ନିରୀକ୍ଷଣ କରି ଚିନ୍ତିତ ହେଲେ ଏବଂ କହିଲେ, "ଏହି ଶୀତଳ ବର୍ଷା କାଳରେ ତୁମେ ଅଧିକ ସମୟ ଏଠାରେ ରହିବା ଦେଖେନକ, ଶରୀର ଅସୁସ୍ଥ ହେବା ସମ୍ଭବ, ଆସ ଭିତରକୁ ଯିବା"; ତେବେ ତାଙ୍କ ହସ୍ତ ଧରି ନେଇ-

ଦେଲେ । ଯାହାଙ୍କ ଯାଉଁ ଅଳ୍ପପରେ ତାଙ୍କ ମୁଖ ଦର୍ଶନ କରି ହଠାତ୍ ଚମକି ପଡ଼ି କହିଲେ, "ପ୍ରାଣପ୍ରିୟେ, ତୁମ୍ଭ ମୁଖ ପାଣ୍ଡୁବର୍ଣ୍ଣ ଓ ଚକ୍ଷୁ ଦୁଇଟି ସଙ୍କୁଚିତ ହୋଇଅଛି, ମୋର ଉପରେ କଣ ଅନିଷ୍ଟକର ଘଟଣା ଘଟି ନାହିଁ ତ ?" ସତ୍ୟ କୃତ୍ରିମ ମନ୍ଦହାସ ପ୍ରକାଶ କରି ଜଣାଇଲେ, "ନାହିଁ, ମୋର କିଛି ହୋଇନାହିଁ । ମୁଁ ସେହି କନ୍ୟାଟି ସକାଶେ ଅତ୍ୟନ୍ତ ଚିନ୍ତିତ ଓ ଦୁଃଖିତ, ସେ ଏଠାକୁ ଆସିଥିବାରୁ ଆପଣ ଅନୁମାନ କରନ୍ତି କି ?" ହରି କହିଲେ, "ଅନ୍ୟ ରାଜପ୍ରାସାଦରୁ ସେ ଆସିଥିବା ଅପରିଚିତ କନ୍ୟା ତାହା ପାଇଁ ତୁମ୍ଭେ କାହିଁକି ଏତେ ବ୍ୟସ୍ତ ହେଉଅଛ ? ଯେଉଁ ଗୁରୁତର ଦୋଷ ହେତୁ ସେ କାରାଦଣ୍ଡ ପାଇଅଛି, ତାହା ଶୁଣିଲେ ତାହା ପ୍ରତି ତୁମ୍ଭେ ସହାନୁଭୂତି ପ୍ରକାଶ କରିବା ଅନୁଚିତ" । ସତ୍ୟ କହିଲେ, "ସେ କଦାପି କୌଣସି ଦୋଷ କରି ନାହିଁ । ମୁଁ ନିଶ୍ଚୟ କରି ଜାଣେ ସେ ନିର୍ଦୋଷୀ । ହା ! କି ଅନ୍ୟାୟରେ ଦଣ୍ଡ ହେଉଅଛି ! ତାହା ସ୍ମରଣ କଲେ ମୋର ହୃଦୟ ବିଦୀର୍ଣ୍ଣ ହେଉଅଛି ।" ହରି ତାଙ୍କୁ ଆଲିଙ୍ଗନ କରି ମନେ ମନେ କହିଲେ, "ଆହା ! କି କୋମଳହୃଦୟା ! ଅଧିକାର ଥିଲେ ଦୋଷାଦୋଷ ବିବେଚନା ନ କରି କାରାଗୃହରୁ ସମସ୍ତଙ୍କୁ ମୁକ୍ତ କରିଦିଅନ୍ତେ" ଏବଂ କହିଲେ, "ପ୍ରିୟେ, କୋକିଳ ! ଦରବାର ଘରକୁ ଯିବା ପୂର୍ବେ ଆମ୍ଭ ବିବାହ ଦିବସ ସ୍ଥିର କରିବା । ଆୟୋଜନ କରିବା ସକାଶେ ପ୍ରାୟ ଏକମାସ ଲାଗିବ । ଏକ ମାସରୁ ଅଧିକ ସମୟ ମୁଁ ଅପେକ୍ଷା କରି ନ ପାରେ । ଆଜି ଜ୍ୟେଷ୍ଠ ଶୁକ୍ଳ ପଞ୍ଚମୀ; ଆଷାଢ଼ ଶୁକ୍ଳ ପଞ୍ଚମୀ ଶୁଭଦିନ ହେବ, ପାଞ୍ଜି ଦେଖିବା ଓ ଗଣନା ପୋଥି ଅନାବଶ୍ୟକ । ଆଜିକାଲି ମୁଁ ସବୁ ବିରଥିବା ହୋଇ ପଡ଼ିଲିଣି । ଉତ୍ତମ ଯୋଗରେ ପାଣିଗ୍ରହଣ କରି ପତି ପତ୍ନୀ ଅସହନୀୟ ମନୋବେଦନା ଓ ଦୁଃଖ ଅନୁଭବ କରିବା ଦୃଷ୍ଟାନ୍ତ ବିରଳ ନୁହେ । ଯାହାଙ୍କ ଭାଗ୍ୟ ଭଲ ହୋଇ ସୁଦ୍ଧା କେବେ ଭାଗ୍ୟବାନ୍

ପୁରୁଷ ସ୍ୱର୍ଗୀୟ ଦାମ୍ପତ୍ୟ ପ୍ରେମାଳାପରେ ଜୀବନକୁ ସାର୍ଥକ ଏବଂ ସଦ୍ଗୁଣ ଓ ସଦ୍ବୃତ୍ତିଙ୍କ ଦ୍ୱାରା ଜଗତକୁ ଅଳଙ୍କୃତ କରି ଦେବମଣ୍ଡଳଙ୍କ ପବିତ୍ର ସୃଷ୍ଟି ସର୍ବନ ଉଦ୍ଦେଶ୍ୟ ସାଧନ କରି ପାରିଅଛନ୍ତି । ଅତଏବ ମୁଁ କହେ, ଅମ୍ଭ ଉଭୟଙ୍କ ମନୋମିଳନ ସମ୍ବାଦର ଶତ୍ରୁ ଅଟେ । ତୁମ୍ଭେ ସ୍ୱୀକାର କଲେ ଆଷାଢ଼ ଶୁକ୍ଳ ସପ୍ତମୀରେ ମହେନ୍ଦ୍ର ଯୋଗ ପଡ଼ୁଛି" । ସିଦ୍ଧଙ୍କ କଥା ଶୁଣି ସତ୍ୟ ସହି ପାରିଲେ ନାହିଁ । ନିଜର ମନୋବାଞ୍ଛା ପୂରଣ ନହେବା କଥା ଚେତେଣେ ଆଉ, ଛଦ୍ମବେଶଧାରଣ ପୂର୍ବକ ସିଦ୍ଧଙ୍କ ଅକୃତ୍ରିମ ଉଦାର ହୃଦୟରେ ଏତାଦୃଶ ଆକାଶ କୁସୁମବତ୍ ଆଶା ପୋଷଣ କର-ଇବା ନିତାନ୍ତ ପାପ ବୋଲି ହୃଦୟଙ୍ଗମ କରି, ସଙ୍କୁଚିତ ପରପାଳକ ଓ ମହା ସଙ୍କଟରୁ ଉଦ୍ଧାର କରିଥିବା ଭଗ୍ନାଶାଙ୍କଠାରେ ବାକ୍ଦାନ କରି ଥିଲେ ସୁଦ୍ଧା ଯଥାର୍ଥ କହି ଦେବାକୁ ଅସନ୍ତୁଷ୍ଟନ ତାଙ୍କ ଜିହ୍ୱା ଜଡ଼ିତ ହେଲା ଏବଂ ଅନ୍ତରରେ କହିଦେଲେ, "ହା ! ବିଧାତା ! ହେ ପ୍ରମୋଦ, ତୁମ୍ଭେ ମୋହ ପ୍ରତି ପ୍ରେମ ପୋଷଣ କରି କଷ୍ଟରେ ମଗ୍ନ ହୋଇଅଛ, ମୋହ ବିବେଚନାରେ ଅଦ୍ୟ ମତେ ତୁମ୍ଭ ସଙ୍ଗିନୀ ମଙ୍ଗଳପ୍ରଦ ହେଲେହେଁ—ହେଲେହେଁ—ଓହୋ ! ମୁଁ କଅଣ ବା କହୁଅଛି ?" ଏମନ୍ତ ସମୟରେ କେତେକଣ କୁଣିଆଁ ତାଙ୍କ ଅଡ଼କୁ ଆସୁଥିବାର ଦେଖି ସତ୍ୟ ପ୍ରକୃତିସ୍ଥ ହୋଇ ଶୀଘ୍ର ଦରବାର ମନ୍ଦିରକୁ ଚାଲିଗଲେ । ସେଠାରେ ଜଣେ ସ୍ତ୍ରୀ ସୁଶ୍ରାବ୍ୟ କୋକିଳ ସ୍ୱରରେ ପ୍ରେମ କାହାଣୀ ଗାନ କରୁଥିଲା । ସେହି କଣ୍ଠ ରସାମୃତ ସଙ୍ଗୀତର ମାଧୁର୍ଯ୍ୟ ଧ୍ୱନ୍ୟବଶ ପକ୍ଷେ ମାରକ ନହେ, କିନ୍ତୁ ଘାତକ ସଦୃଶ ହେଲା—ଯାହାହେଉ ମନ ଦୁଃଖର ହାତରେ ହାତଛଡ଼ା ଅଗତ୍ୟା ସେଠାରେ ବସି ରହିଲେ । ଏହି ସମୟରେ ପାଠିବାକୁ ଅସି ସିଦ୍ଧଙ୍କୁ କହିଲେ, "ଅନୁସନ୍ଧାନ ଶେଷ ହେଲା, ଫଳ ବୃଥା ଶ୍ରମ ମାତ୍ର । ନ୍ୟାସଦେବଙ୍କ ଅତି କନ୍ୟାଙ୍କୁ ଧରିବ ବୋଲି କେତେ ଆଶା ପୋଷି ଥିଲୁ । ସେ ଜଣେ ବଡ଼ଦ ଜନ୍ମା ।

ଥିଲି, ବର୍ତ୍ତମାନ ତାହା ସମ୍ପୂର୍ଣ୍ଣ ଦୂରୀଭୂତ ହେଲା—ମୋର ଜୀବନ ସାର୍ଥକ ହେଲା ।”

“ଆହା, ଝିଅ ! ବେଳହେଲା” ବୋଲି ବଇଶାଖୀ ଭାବଦେଲେ-ଦସ୍ମାନଧି ସେ ହ ଦୁଇଜଣଙ୍କୁ ଗାଡ଼ିରେ ବସାଇ ରେଲ୍ ଷ୍ଟେସନରେ ପ୍ରସ୍ତୁତ ଅଛିଲେ । ଉଭୟେ ଠିକ୍ ସମୟରେ ମନ୍ଦ୍ରାଜ ସହରରେ ପହଞ୍ଚିଲେ । ସେଠାକୁ ଯାଉଁ ଯାଉଁ ମାର୍ଗ ମଧ୍ୟରେ ଗୋଟିଏ ମୋଟର ଗାଡ଼ିରେ ଯାଉଥିବା କୋଙ୍କଳ ପର ଜଣେ ସ୍ତ୍ରୀ ବସି ଯାଇ ସ୍ୱଦାର ବଇଶାଖୀ ଦେଖି ସହଧ୍ୟକୁ କହିଲେ । ଉଭୟେ ତାହା ପ୍ରତି ଚାହିଁଲେ, ସେ ମୁହଁ ଘୋଡ଼ାଇ ଦେଇ ଦ୍ରୁତ ଗତିରେ ମୋଟର ଚଳାଇ ଅଦୃଶ୍ୟ ହେଲା । ଏହି ଘଟଣା ଭାବି ବଇଶାଖୀ କୋଙ୍କଳ ହୃଦୟରେ ନାନା ମତେ ତର୍କଣା କରିବାକୁ ଲାଗିଲେ ।



## ଦ୍ୱାଦଶ ଅଧ୍ୟାୟ

ଦିନେ ଦୃଢ଼କାନ୍ତ ଅର୍ଦ୍ଧରାତ୍ର ସମୟରେ କୁନ୍ତଳା ସଙ୍ଗୀତ ମନ୍ଦିରରେ ବୀଣାଯନ୍ତ୍ର ବାଦନ କରିବା ଶୁଣି ସେଠାକୁ ଯାଇ ପ୍ରଶ୍ନ କଲେ, “ପ୍ରିୟେ ! ଏତେରାତ୍ର ପର୍ଯ୍ୟନ୍ତ ନିଦ୍ରା କରୁନାହିଁ ?” କୁନ୍ତଳା ଗାତ୍ରୋତ୍ଥାନ କରି “କେତେ ରାତ୍ର ହେଲା” ? ବୋଲି ପଚାରିଲେ । ଦୃଢ଼କାନ୍ତ କହିଲେ, “ବର୍ତ୍ତମାନ ଅର୍ଦ୍ଧରାତ୍ର । ଦେଶବାସିମାନେ ଏତେକାଳ ଉନିଦ୍ର ରହିବା ଅସ୍ୱାଭାବିକ । ତୁମ୍ଭ ଚେତା ରହିବା ଦେଖିଲେ ଶଙ୍କା ଜାତହୁଏ; ଏକେ ରାତ୍ର ଯାଏଁ ତୁମ୍ଭର କି କାର୍ଯ୍ୟ ରହିଅଛି, ମୁଁ ଜାଣି ପାରୁ ନାହିଁ । ଏପରି

ଉନ୍ନିଦ୍ର ହେବା ଅସ୍ୱାସ୍ଥ୍ୟଜନକ ଓ ଉନ୍ମାଦଗ୍ରସ୍ତର ଚେଷ୍ଟା ବିନା ଆଉ କିଛି ହୋଇ ନପାରେ ।" କୁନ୍ତଳା ହାସ୍ୟରସରେ କହିଲେ, "ଆପଣ ଅତି ଶୀଘ୍ର ନିଦ୍ରା କରି ଭଲ ହେଉନ୍ତୁ ତ ?" ଦୃଢ଼କାନ୍ତ ଦୀର୍ଘ ନିଶ୍ୱାସ ତ୍ୟାଗ କରି ଉତ୍ତର ଦେଲେ, "ମୋର କଅଣ ଭଲ ହୋଇ ପାରିବ ! ସ୍ୱପ୍ନ ପାହିଲେ ଯେଉଁ ସମ୍ମୁଖ ପଦାର୍ଥରେ ଦୃଷ୍ଟି ପକାଇବି, ସ୍ତମ୍ଭ ସ୍ତମ୍ଭ ହୋଇ ବଣିକ କନ୍ୟା ଉଜ୍ଜ୍ୱଳ ରୂପ ହେବାର ଦେଖେ; ସେ ମୋର ଜୀବନ ହିଂସ୍ର ବୋଲି ଜାଣି ନିର୍ଭୟ ହୋଇଥାଏ । ଯାହାକୁ ଉଚିତ ସେ ଏହି କଥା ଜାଣି ଅଛନ୍ତି । କେହି କେହି ମୋହ ପ୍ରତି ଦୟା କରି କିଛି କହନ୍ତି ନାହିଁ ବା କହନ୍ତି ନାହିଁ, କେହି କେହି ମତେ ମାରଣ୍ଡକ କରିବାର ମୁଁ ସ୍ପଷ୍ଟରୂପେ ବୁଝିପାରୁଅଛି । ଯଥାର୍ଥ କହୁଅଛି ଏହି ବିଷୟ ବନ୍ଧନ ପରୁ ନଥିଲେ ଦେଶ ଭ୍ରମଣ କରି ପାନ୍ତି । ସେହି ଚଣ୍ଡାଳୁଣୀ କେଉଁ ଠାରେ ଲୁଚିଅଛି ଜାଣି ପାରିଲେ ଅତି ଶୀଘ୍ର ତାକୁ ଧରିଲ, ପୋଲିସ ହସ୍ତରେ ସମର୍ପଣ କରି ସମ୍ବାଦପତ୍ର ଗଞ୍ଜଣାରୁ ରକ୍ଷାପାନ୍ତି । ଏହି ଯୁଗରେ ସମ୍ବାଦ ବାହକଙ୍କୁ ବୋବାଳ ବେଶି । ଦଣ୍ଡ ସହି ନପାରି ପ୍ରାଣ ରକ୍ଷା କରିବା ସକାଶେ ଲୁଚି ପଳାଇବା କମ୍ପନ୍ଦେଣ୍ଟା ଜାଣି ଆଡ଼ିକ ଏବେ ଅତ୍ୟମ୍ବର । ବଡ ବଡ ଅକ୍ଷରରେ ଶିରୋନାମ, ସୁପ୍ରକାଶ ସ୍ତମ୍ଭରେ ଛପା, ବହୁଦୃଷ୍ଟି ଆକର୍ଷଣାର୍ଥେ ସ୍ଥାନେ ସ୍ଥାନେ ସମ୍ବାଦକୁ ଚତୁର୍ଦ୍ଦିଗ କୁଟିଳ ରେଖାବନ୍ଧ, ଇତ୍ୟାଦି ଇତ୍ୟାଦି । ତାହା ବିଷୟରେ ଯେ ଯାହା ଲେଖି ଖବର କାଗଜରେ ସ୍ଥାନ ପାଏ । ସେହି ହେତୁ କେତେ ସାବଧାନ ସମ୍ବାଦ ଉଣ୍ଟିକୁ ପଢ଼ୁଥିବା କିମ୍ବା କେବେ ପ୍ରକାଶ ନ ହେବା ବିଶେଷ ସମ୍ଭାବନା । ଏକ ସମ୍ପାଦକୀୟ ଧର୍ମ ! ସମ୍ବାଦପତ୍ରରେ ପ୍ରକାଶଯୋଗ୍ୟ ବିଷୟ ଚର୍ଚ୍ଚିତ ଅସୀମ ଭଣ୍ଡାର ଶେଷ ନହେବା ଯାଏଁ ଏତାଦୃଶ ପ୍ରବନ୍ଧ ପ୍ରକାଶ ପତ୍ରର ଅଭାବ ପୂରଣ କରିବା ଛଡ଼ା ଅନ୍ୟ କିଛି ନୁହେଁ । ବିଜ୍ଞାପନ ଦେଇ ଦୋଷୀକୁ ଧରିବା ପାଇଁ ସରକାର

ସମ୍ଭା ବୈଷ୍ଣବଭାସ୍କ ପୂର୍ବସ୍ୱ ବିଜ୍ଞାପନ ଯେପରି ପାଇଲେ, ତେତେ ପ୍ରକାଶ କରିବା ଧର୍ମ । ତଦ୍ୱାରା ସ୍ତ୍ରୀଙ୍କ ଶାଢ଼ାକୁ ପଇସା ମିଳିବ, ଯୋଗ୍ୟ ଦଳ ଏବଂ ତାଙ୍କ ବଂଶ ଓ ଅଶ୍ରିତ ଲୋକେ ସନ୍ତୋଷ ହେବେ । ଜନ୍ମେଦଳୁ ଯଦି ବାଛି ଯତ୍ନ ନିବ, ପରବେଶରେ ଲାଭପ୍ରାପ୍ତ ବ୍ୟକ୍ତି-ମାନେ ଭବିଷ୍ୟରେ ଲାଭ ଅଙ୍କଟିର ଉତ୍ପାଦପତ୍ରର ଗ୍ରାହକ ହେବେ ଓ ଖବର କାଗଜର ଅମ୍ଭୁତ ବୃଦ୍ଧି ହେବ ।”

ଗୁରୁଭକ୍ତ ଭୂପିତ୍ ଦୂଃଖ ପ୍ରକାଶ କରି ପରେ କହିଲେ, “ଆସ ସେ ପିଲାଟି ପ୍ରଭୁ ଭାଇଙ୍କ ଏତେ ଦୀନତା ଦର୍ଶାଉଛି ଅଛନ୍ତି ? କେ ଜାଣେ ସେ ନିର୍ଦ୍ଦୋଷୀ ହୋଇ ଥାଇ ପାରେ ।” ଦୃଢ଼ଭାବେ କହିଲେ, “ଛି ଛି, ନିର୍ଦ୍ଦୋଷୀ ହୋଇଥିଲେ କର୍ତ୍ତବ୍ୟ ଲୋକମାନଙ୍କ ପୂର୍ବରୁ ଆସିବାର ସ୍ୱୀକାର କରି ପାରନ୍ତି, ନେକ କିଛି ବସ୍ତ୍ରାଦି ହେଉନାହିଁ । ଯାହା-ହେଉ ବଦଳରେ ରାଜ ହେଲା, ମୁଁ ଯାଉଛି, ଶୀଘ୍ର ସବୁଜାଗାରୁ ଅସ” । କୃଷ୍ଣକାନ୍ତ ଅନ୍ୟ କରି ଗାଡ଼ି ଘଣ୍ଟା ଡ଼ାକି ସୁନ୍ଦର ଦିଗନ୍ତ ମହଲକୁ ଗଲେ । ସେଠାରେ ନବଚନ୍ଦ୍ରିକା ଝରିକା ନାତି ଦ୍ୱାର ଦେଖିଲେ । ତାହାର ସୁନ୍ଦର ନୂଆ ସର୍ବତ ନିଜ ଟିକିଏ ଦୁର୍ଗନ୍ଧ ବୈଚିତ୍ର୍ୟ ଜାତ ହେଲା । ମନେ ମନେ ଭାବିଲେ “ମୁଁ ଜଣେ ଭଦ୍ର ସ୍ତ୍ରୀ, ଏହାର ଗର୍ଭ-ଧାରିଣୀ ବୋଲି ଜାଣିବାରୁ ଯେ ମୋ ଦେହ । ଏହାପରି ଏଣିକ ଦୁଷ୍କାର୍ଯ୍ୟ କରିବ ନାହିଁ ।” ପରେ ଧୀରେ ଧୀରେ ଗୋଟିଏ ଗୁପ୍ତ କୋଠରି ଭିତରେ ପଶିଲେ ଭିତରକୁ ଗଲେ । ତହିଁର ବାହ୍ୟତ ଆଲୁଅର ଘଣ୍ଟି ଲଗାଇ କୃତ୍ରିମ ମାଣିକ୍ୟାଦି ଦ୍ରବ୍ୟ କରିବା-ପାଇଁ ଓ ଦାମଡ଼ା ଧରି ବସିଲେ । ପ୍ରାୟ ପନ୍ଦର ମିନିଟ ପରେ ହଠାତ୍, ଜଣେ ପୁରୁଷ ଗବାକ୍ଷ ଦେଇ କୋଠରିରେ ପ୍ରବେଶ କଲେ । ଦେଖିଲେ ଯେ ନିଜ ପୁଅର ବନ୍ଧୁ ଆସୁଅଛି ।

କୁ—ସଇ ! ତୁମ୍ଭେ ଆସିବାର କ୍ଷଣ ଦେଖି ନାହିଁ ତ ? ତୁମ୍ଭେ ମୋର ସଇ ବୋଲି କେତେକ ଜାଣନ୍ତି ନାହିଁ । କାରଖାନା ମାନେଜର ମତେ ଦେଖିବାକୁ ବାରମ୍ବାର ଅର୍ଦ୍ଧରାତ୍ର ହଳ୍ପୁରେ ଗବାକ୍ଷ ମାର୍ଗରେ ଯାନ୍ତି ବୋଲି ପ୍ରକାଶ ହେବା ବଡ ଅଦ୍ଭୁତ ।

ଦ—(ପ୍ରଶ୍ନର ଉତ୍ତର ନଦେଇ) ନା, ଛି ! ଗତରାତ୍ର ମୁଁ ସତ୍ୟବତୀକୁ ଦେଖିଲି ।

କୁ—ତୁମ୍ଭେ ଦେଖିଲ ! ସତ କହୁଛ ? ହା ! ମୋହ ଲାଗି ଜଣେ ନିର୍ଦ୍ଦୋଷୀ ବାଳିକା ଅକାରଣ ଲାଞ୍ଛିତ ହେଲା ଓ ଅସହ୍ୟ କଷ୍ଟ ଭୋଗ କଲା । ଏହି ତନ୍ତ୍ରର କାର୍ଯ୍ୟରେ ହସ୍ତକ୍ଷେପ କଲାବେଳେ ଏତାଦୃଶ ପାପକର୍ମ କରିବାକୁ ହେବ ବୋଲି ସ୍ୱପ୍ନରେ ସୁଦ୍ଧା ଭାବି ନଥିଲି ।

ଦ—ଯାହା ହେବାର ହୋଇ ଯାଇଅଛି, ବୃଥା ପଶ୍ଚାତ୍ତାପରେ କି ଫଳ ? ତିଲ୍ଲଠାର ଚିତ୍ତ କଷ୍ଟ ହେବାର ସତ୍ୟ, କିନ୍ତୁ ତାହା ପାଇଁ ମୋର ତିଳେମାତ୍ର ଅନୁଗ୍ରହ ଜନ୍ମୁ ନାହିଁ ! ଜ୍ୟୋତିଃପ୍ରଭ ପୂର୍ବେ ଯେଉଁ ପରି, ବର୍ତ୍ତମାନ ସୁଦ୍ଧା ସେହିପରି ଅସଭ୍ୟ ବ୍ୟବହାର ଓ ଘୃଣାକରେ ।

କୁ—ଭଲ ! କାହିଁକି ତାହାପ୍ରତି ଏତେ ବିରାଗ ହୁଅ ? ମୋର ବିଶ୍ୱାସ ଯେ, ସେ ଜଣେ ସୁଶୀଳା, ତାହାକୁ ଘୃଣା କରିବା ଜାଣେ ନାହିଁ । ପାରିଲେ ମୁଁ ତାକୁ ଟିକିଏ ସାହାଯ୍ୟ କରନ୍ତି; ସେ ମନେ ସଦା ଦୁଃଖ ପାଏ; ମୁଁ ପାପିନୀ ତାହାର ଦୁଃଖର କାରଣିକା ହେଲି ! ଆଚ୍ଛା, ତାଙ୍କୁ କେଉଁଠାରେ ଦେଖିଲ ?

ଦ—ଜାଣ ! ଶୁଣିଥିବ ଜଗତରେ ଅଭିଳାଷପୁର ନିବାସୀ ଦୟାନିଧି ପଣ୍ଡିତଙ୍କ ପୁତ୍ରରେ ବୈବାହିକ ସମ୍ବନ୍ଧ ନିଷ୍ପତ୍ତି କରିବା ସଙ୍ଗେ

ଛଦ୍ମ ଐନ୍ଦ୍ରଜାଲିକ ବିଦ୍ୟା ଅଭ୍ୟାସ କରି ନପାରେ, ତଦ୍ୱାରା ମୋହର ସର୍ବ ନାଶ ଘଟିପାରେ ।

ବ—ନାଗ ! ତୋର ଏହି ସ୍ପଷ୍ଟ କଥାଗୁଡ଼ିକ ମତେ କିଛି ଭଲ ଲାଗିଲା ନାହିଁ । ନାନା ଉପାୟ କରି ତତେ ଏହି ବଣିକ ସହିତ ବିବାହ କରାଇ ଥିବାରୁ ତୁ ଏବେ ବଡ଼ଲୋକ ହୋଇ ନିଜ ସହୋଦରକୁ ହେୟ ଜ୍ଞାନ କରିବାକୁ ବସିଛୁ ଅଛୁ, ଏପରି କରିବା ଧର୍ମ ନୁହେ । ତୁ ମତେ ଛାଡ଼ି ହେବାକୁ ଇଚ୍ଛା କଲେହେଁ ମୁ ତତେ ଛାଡ଼ି ଦେବି ନାହିଁ । ମୋହର ମୁଖ ଦାରିଦ୍ର୍ୟରେ ତୁ ଧୂଳି ପକାଇବାକୁ ଯତ୍ନକଲେ, ତୋହର ଏହି ଐଶ୍ୱର୍ଯ୍ୟ ଓ ଅହଂକାର ଅତିଶୀଘ୍ର ଛଡ଼ାଇ ଦେବାକୁ କୁଣ୍ଠିତ ହେବି ନାହିଁ । ପୂର୍ବ ଚରିତ୍ର ପ୍ରକାଶ କରିଦେଲେ କେତେଦିନ ତୁ ଧନିକ ବଣିକଙ୍କ ପତ୍ନୀ ବୋଲି ପରିଚିତ ହୋଇ ପାରିବୁ, ଠିକଏ ବିଚାର କର । ମତେ ଛାଡ଼ିଲେ ତୋର ଗତି ନାହିଁ, ଧରାପଡ଼ିଲେ ଦୁଇ ଜଣ ଯାକ ବିଚାରାଳୟରେ ଦଣ୍ଡାୟମାନ ହେବା, ନୋହିଲେ ଉଭୟଙ୍କ ମଙ୍ଗଳ । ଅତଏବ ବୃଥା ବାକ୍‌ଜାଲ ବିସ୍ତାର ନକରି ମୋର ଉପଦେଶ ଗ୍ରହଣ କର । ଜଣେ କେହି ଗୁପ୍ତ ଗାୟିକା ମାନ୍ଦ୍ରାଜ ନଗରକୁ ଆସି ଅଛି, ତାହାର ଗାନରେ ଅନେକ ରାଜା ମହାରାଜା ତୃପ୍ତ ହୋଇ ତାହାଙ୍କୁ ନାନା ବହୁମୂଲ୍ୟ ଅଳଙ୍କାର ପୁରସ୍କାର ଦେଇ ଅଛନ୍ତି । ଅରେ ତୁ ତାହାଙ୍କୁ ଦେଖିବାକୁ ଯାଇ ତାର ଅଳଙ୍କାର ଦେଖି ସେହି ପ୍ରକାର କେତେଗୋଟି କୃତ୍ରିମ ଅଳଙ୍କାର ପ୍ରସ୍ତୁତ କର । ତଦ୍ୱାରା ବିଶେଷ ଧନ ସଞ୍ଚିତ ହେବ ଓ ମୋହର ମନୋରଥ ସିଦ୍ଧ ହେବ । ସତ୍ୟବତୀ ପୋଲିସଙ୍କ ଦ୍ୱାରା ଧୃତ ହେବା ପୂର୍ବେ ତୁ ତାହା କରିବାକୁ ହେବ ।

ବଦ୍ରୁଦ୍ଦିନ୍ ହିଦ୍ଦର ହଜାର କର କୁହୁକନଗର ବୈରାଗ୍ୟ ଗ୍ରତ କଲା; ସେ ଜନ୍ମେ ପ୍ରକୃତ ହୋଇ ତ୍ରିଲ ଉପର ପ୍ରସ୍ତାବାନୁଯାୟୀ ଚଳିବାକୁ

ସମ୍ମତି ପ୍ରଦାନ କଲେ । ଏହି ସମୟରେ ଦୃଢ଼କାନ୍ତ ପୁନର୍ବାର ଶଯ୍ୟାରୁ ଉଠି ଆସି କପାଟରେ ହାତ ମାରି କୃଷ୍ଣକାନ୍ତଙ୍କୁ ଡାକିଲେ । ସବୁ କାହାଣୀ ବ୍ୟସ୍ତ ହେଲେ, କରିବା ଉପାୟ ପାଇଲେ ନାହିଁ । ବିଦ୍ରୂପ ଗୋଟିଏ ଉପାୟ ରଚନା କରି କହିଲେ, "ଭାଇ, ତୁ 'ଚୋର, ଚୋର' ବୋଲି ଚିତ୍କାର କର, ମୁଁ ଏହି ଘରର ସାମଗ୍ରୀ ଏଣେ ତେଣେ ଫିଙ୍ଗିଦେଇ ପଛ ପଟ ପଞ୍ଜରା ବାଟେ ଡେଇଁ ପଳାଇବି, ଦୃଢ଼କାନ୍ତ କପାଟ ଭାଙ୍ଗି ଭିତରକୁ ଆସିବେ । "ଚୋର, ଚୋର, କାରଖାନା ସହକାରୀମାନଙ୍କର ସୁଧୀର ଘୋଷ ପରି ଦିଶିଲା; ସେହି ଗବାକ୍ଷ ମାର୍ଗରେ ଡେଇଁ ପଳାଇଗଲା" ବୋଲି ସ୍ପଷ୍ଟ କରି କହିବୁ ।

ସୁଧୀର ଘୋଷ ଜଣେ ଯଥାର୍ଥବାଦୀ ଓ କର୍ତ୍ତବ୍ୟନିଷ୍ଠ କର୍ମଚାରୀ । ଯେଉଁ କାରଖାନାର ଉନ୍ନୟନ ସମ୍ବନ୍ଧେ ବିଦ୍ରୂପଙ୍କ ପ୍ରସ୍ତାବରେ ସେ କେବେ ଅନୁମୋଦନ କରିନ୍ତି ନାହିଁ, ଅତଏବ ବିଦ୍ରୂପ ତାଙ୍କ ପ୍ରତି ଈର୍ଷାପୂର୍ଣ୍ଣ-ଈର୍ଷା ସାଧନ କରିବାର ସମୟ ଖୋଜୁଥିଲେ, ବର୍ତ୍ତମାନ ପାଇଲେ ।

ସୁଶୀଳା ଓ ଇନ୍ଦୁ କୃଷ୍ଣକାନ୍ତଙ୍କ କଥା ଶୁଣିବା ପରି କଲେ । ଦୃଢ଼କାନ୍ତ ତା କଥା ବିଶ୍ୱାସ କଲେ, ଚୋର ପଛରେ ଦଉଡ଼ି ଯିବାକୁ ସେବକମାନଙ୍କୁ କହି, କୃଷ୍ଣକାନ୍ତଙ୍କୁ ସାନ୍ତ୍ୱନା ଦେଇ ଶୟନାଗାରକୁ ନେଇ ଗଭୀର ଚିନ୍ତାରେ ପଡ଼ିଥିବା ଜଣାପଡ଼ିଲେ । କିନ୍ତୁ ନିଦ୍ରାଦେବୀ ତାଙ୍କ ଅପେକ୍ଷା ପାଖ ରହିବେ ବୋଲି ଭାବିଲେ ନାହିଁ । ସ୍ୱଭାବ ଦ୍ରୋହ ସମ୍ଭାବନା ଭୂତ ଧାରଣ କରି ଦୃଷ୍ଟି ପଥରେ ନୃତ୍ୟ କଲା । ସ୍ୱପ୍ନରେ ଚନ୍ଦ୍ର ମୁଦ୍ରିତ ହେଉନାହିଁ, ଭବିଷ୍ୟତ ଭାବନାରେ ଯିବା ପରେ ଯେଉଁ ରୂପ ମନସ୍ତାପ ପାଉଥିଲେ, ଅଳ୍ପ ଦିନରେ ନିର୍ଦ୍ଦୋଷୀ ବ୍ୟକ୍ତି କର୍ମଚ୍ୟୁତ

ଜନ୍ମକୁ କଳଙ୍କିତ କରିବା ଲାଗି ମିଥ୍ୟା ରଚନା କରି ଅତୋଧିକ ହୃଦ୍-ବେଦନା ଭୋଗକଲେ ।



## ତ୍ରୟୋଦଶ ଅଧ୍ୟାୟ

ନୌଛ ବାରଙ୍ଗ ନିକଟରୁ ତାହାସବୁ ଅଧିକାରୀଙ୍କ ବାଦ ନିର-ଞ୍ଜନ । ସେ ଜଣେ ସମ୍ପାଦକ୍ରୁଟି ଓ ଅଧିକ ପ୍ରଶଂସା । ଅନ୍ୟର ହାଇସ୍କୁଲ ନ ହିବାକୁ ସଦା ଉଲ୍ଲଣ୍ଠିତ । ତାଙ୍କ ଦ୍ୱାରା ପଠାଯିବା ଚିଠିପତ୍ର ଦୁଷ୍ଟ ଦେଖେ କେବେ କେବେ ଖୋଲି ଦେଇଁର ବଷସ୍ତୁ ବୁଝନ୍ତି । ବିଦ୍ରୁପ ଓଉଦ୍ଧରେ ତାଙ୍କର ବିଶେଷ ସନ୍ଦେହ ଜାତ ହୋଇଥିଲା । ଦିନେ ଅପରାହ୍ନ ସମ-ୟରେ ନିରଞ୍ଜନ ବାବୁ ଗୋଟିଏ ଚିଠି ପିଣ୍ଡାଳଙ୍କର ଯତ୍ନ କରୁଥିବାର ଦେଖି ତାଙ୍କ ସ୍ପନ୍ଦ ନାକ ତଳୁ ଭର୍ତ୍ସନା କରି କହିଲେ, "ଅରେ, ନର ! ତୋ ଲାଗି ମୁ ଦିନେ କୁଣ୍ଠାରେ ପଡ଼ିଯିବି, କେତେ କହୁଚି ତୁ ମୋ କଥା ଶୁଣିଲୁ ନାହିଁ, ଡାକଘର ନିୟମ ଶିଖିଏ ପାରିଲୁ ନାହିଁ ପରର କଥା ତତେ କି ଲୋଡ଼ା ? ମୁଦ୍ରିତ ପତ୍ରାଦି ଖୋଲିବା ହେତୁରେ ଦୋଷ ହେଉନ୍ତ ନାହିଁ, ତୋହର ଏହି ସ୍ୱଭାବ ଅବଶ୍ୟ ଅଧିକାରୀଙ୍କ କର୍ଣ୍ଣରେ ପଡ଼ିବ ଓ ତୁ ବିପଦଗ୍ରସ୍ତ ହେବୁ ।" ନିରଞ୍ଜନ ଉତ୍ତର ଦେଲେ, "ଅଲେ, ନାନ ! ମୋର ସ୍ୱଭାବ ତ ସେହିପରି, ମୁ କରିବି କଣ ? ସେଥିହେତୁ ଅନ୍ୟାନ୍ୟ ବୃଦ୍ଧି ଗୁଡ଼ିକ ତାଙ୍କ ବିସ୍ରଗରେ ପଡ଼ିଅଛି । ମୁ କାହାର ଟଙ୍କା ହାନି କରୁନାହିଁ କିମ୍ବା ପରସ୍ପରକୁ ଯାଇବାକୁ ବାସନା କରିନାହିଁ । ମୋହର କେବଳ କୌତୁହଳାକ୍ରାନ୍ତ ମନର ତୃପ୍ତି ପାଇଁ କେବଳ ମୁ ତାହା କରୁଅଛି । ମୋ ପାଖକୁ ଆସ, ଗୋଟିଏ କଥା ଶୁଣିବ ।"

